ପରଶ୍ରମର ଅର୍ଥ :

ଲେଖିକା :
ଶୁଭଶ୍ରୀ ମିଶ୍ର
ଚନ୍ଦ୍ରଶେଖର ପୁର, ଭୁବନେଶ୍ୱର

ପ୍ରକାଶକ :
ଜ୍ଞାନମନ୍ଦିର ପବ୍ଲିକେଶନ
କନକା ରୋଡ଼, କଟକ

ପ୍ରଥମ ସଂସ୍କରଣ—୧୯୯୧

ମୁଦ୍ରାକର :
ବାସନ୍ତୀଦୁର୍ଗା ପ୍ରିଣ୍ଟର୍ସ
ଖଟବିନ ସାହି, କଟକ

ମୂଲ୍ୟ : ଦଶ ଟଙ୍କା

# ସୂଚୀ ପତ୍ର





# ପ୍ରକୃତ ବନ୍ଧୁ

ଦିନକର କଥା । ବାପ, ପୁଅ ଖାଇ ବସିଥାନ୍ତି । ବାପା ପୁଅକୁ କହିଲେ—"ବୁଝିଲୁ ପୁଅ ! ତୁ ଜୀବନରେ ବହୁତ ଧନ ଅର୍ଜନ କରିପାରୁ, ବହୁତ ଯଶ ପାଇପାରୁ କିନ୍ତୁ ଯଦି ପ୍ରକୃତ ବନ୍ଧୁ ଦୁଇ ତିନିଜଣ ପାଇ ପାରିବୁ ତା'ହେଲେ ବୁଝିବୁ ତୋର ଜୀବନ ସଫଳ ହେଲା ।



ପୁଅ ବାପାଙ୍କ କଥା ଶୁଣି ହସିଦେଲା । କହିଲା—"ବାପା, ଦୁଇ ତିନିଜଣ କ'ଣ ? ମୋର ପରା ୨୦।୨୫ ଜଣ ବନ୍ଧୁ ଅଛନ୍ତି ।

ବାପା ଆଶ୍ଚର୍ଯ୍ୟ ହୋଇ କହିଲେ—"ମୋର ବୟସ ଆସି ପଚାଶ ଟପିଲାଣି ମୁଁ ଆଜି ପର୍ଯ୍ୟନ୍ତ ମାତ୍ର ଗୋଟିଏ ପୂରା ବନ୍ଧୁ ଓ ଗୋଟିଏ ଅଧା ବନ୍ଧୁ ପାଇଛି । କିନ୍ତୁ ତୋତେ ୨୦ ବର୍ଷ ନ ପୂରୁଣୁ ତୁ ୨୦ରୁ ଅଧିକ ବନ୍ଧୁ କରି ସାରିଲୁଣି ।"

"ମାନ ଦେଢ଼ଟା ବନ୍ଧୁ, କି ଆଶ୍ଚର୍ଯ୍ୟ !" ପୁଅ ହସି ହସି କହିଲା ।

ବାପା କହିଲେ—ଦେଖ୍ ମୁଁ ଯେତିକି ପାଇଛି ସେତିକରେ ଖୁସି ।
କାରଣ ମୁଁ ଯାହାକୁ ବନ୍ଧୁ କହେ, ସେ ମୋର ପ୍ରକୃତ ବନ୍ଧୁ । ପୁଅ କହିଲା,
ବାପା ! ମୋ ବନ୍ଧୁମାନେ ମଧ୍ୟ ତମ ବନ୍ଧୁଠାରୁ କୌଣସି ଗୁଣରେ କମ୍
ନୁହନ୍ତି । ତମେ ଚାହିଁଲେ ପରୀକ୍ଷା କରିପାର ।

ବାପା କହିଲେ—ଠିକ୍ ଅଛି, ତୁ ଗୋଟାଏ କାମ କର । ଗୋଟାଏ
ଅଖାରେ କିଛି ମାଟି ଓ ପୁରୁଣା ଲୁଗା ରଖି ସେଥିରେ ନାଲି ରଙ୍ଗର ସ୍ୟାହି
ଛିଞ୍ଚିଦେ । ତା'ପରେ ତାକୁ ନେଇ ସାଙ୍ଗଙ୍କ ପାଖକୁ ଯା । କହିବୁ ତୁ ଗୋଟିଏ
ମଣିଷ ମାରି ଦେଇଛୁ । ମଣିଷଟିର ମୃତଦେହ ବସ୍ତାରେ ଅଛି । ସେ ତାକୁ
ଶୀଘ୍ର ପୋତିବାର ବନ୍ଦୋବସ୍ତ କରିଦେବ । କାରଣ ତୋ ପଛରେ ପୋଲିସ
ଲାଗିଛନ୍ତି । ତତେ ସେ ତାଙ୍କ ଘରେ ଲୁଚାଇ ରଖିବ । ଆଉ ମଧ୍ୟ ତାକୁ କହିବୁ
ଯଦି ସାଙ୍ଗ ଘରୁ ଧରା ପଡ଼ୁ ତେବେ ସାଙ୍ଗଙ୍କୁ ମଧ୍ୟ ଜେଲ ହୋଇଯାଇ-
ପାରେ । ତେଣୁ ତୋ ବନ୍ଧୁ ତା' ନିଜ ଜୀବନକୁ ବିପନ୍ନ କରି ତୋତେ
ସାହାଯ୍ୟ କରିବାକୁ ଦେବ ।

ତା ପରଦିନ ସଂଧ୍ୟାରେ ବାପାଙ୍କ କଥାନୁସାରେ ପୁଅ ବାହାରିଲା ।
ଯେତେବେଳେ ରାତିରେ ସେ ଫେରିଲା, ଦୁଃଖ ଓ ଅବସାଦରେ ତା' ମୁହଁ
ଝାଉଁଳି ପଡ଼ିଥାଏ । ବାପାଙ୍କୁ ଆସି କହିଲା—ଆଜି ମୁଁ ପ୍ରକୃତରେ ବୁଝିଲି
ଏମାନେ ସବୁ ମୋର ଲୋକ ଦେଖାଣିଆ ସାଙ୍ଗ । କେହି ଜଣେ ବି ମୋତେ
ସାହାଯ୍ୟ କରିବାକୁ ବାହାରିଲେନି । କିଏ କେତେ ପ୍ରକାର ଛଳନା କଲେ ।
କିଏ କହିଲା ଏ କାମକୁ ଛାଡ଼ି ଆଉ ଯାହା କହିଲେ ସେ କରିବ ତ ଆଉ କିଏ
କହିଲା ଜରୁରୀ କାମରେ ସେ ବର୍ତ୍ତମାନ ବାହାରକୁ ଯାଉଛି ତେଣୁ ଫେରିଲା
ପରେ ଚିନ୍ତାକରି କହିବ । ଆଉ କେତେକ ତାକୁ ଉପଦେଶ ଦେଲେ
ପୋଲିସ ପାଖରେ ଆତ୍ମ ସମର୍ପଣ କରି ଜେଲ ଭୋଗ କରିବାକୁ ।

ବାପା ତା ପିଠି ଥାପୁଡ଼େଇ କହିଲେ--ବର୍ତ୍ତମାନ ତୋର ବୟସ
ବହୁତ ଅଛି ପ୍ରକୃତ ବନ୍ଧୁ ଅର୍ଜନ କରିବା ପାଇଁ । ତେଣୁ ତୁ ବ୍ୟସ୍ତ ହୁଅନା ।
କାଲି ତୁ ମୋର ଅଧା ବନ୍ଧୁ ପାଖକୁ ଯାଆ, ଦେଖ ସେ କ'ଣ କହୁଛି ।



ପରଦିନ ବାପାଙ୍କଠାରୁ ଠିକଣା ନେଇ ମୁଣ୍ଡରେ ବସ୍ତା ଲଦି ପୁଅ ଯାଇ ପହଞ୍ଚିଲା ବାପାଙ୍କ ଅଧା ବନ୍ଧୁଙ୍କ ଘରେ। ଆଖି ଛଳ ଛଳ କରି ଭୟ ପାଇବାର ଅଭିନୟ କରି ନିଜର ପରିଚୟ ଦେଲା। କହିଲା ମୁଁ ଜଣଙ୍କୁ ମାରି ଦେଇଛି। ତା ମୃତଦେହ ଏ ବସ୍ତାରେ ଅଛି। ଆପଣ ଦୟାକରି ଏହାକୁ ପୋଡିବାର ବନ୍ଦୋବସ୍ତ କରନ୍ତୁ ଏବଂ ମୋତେ ଲୁଚାଇ ଦିଅନ୍ତୁ ଯେପରି

କେହି ଏ କୁକର୍ମ ବିଷୟରେ ଜାଣି ପାରିବେ ନାହିଁ । ଯଦି ଜାଣନ୍ତି ତେବେ ମୋତେ ଫାଶି ହୋଇଯିବ ।

ବନ୍ଧୁ ଜଣକ ସଙ୍ଗେ ସଙ୍ଗେ ତାଙ୍କୁ ଘର ଭିତରକୁ ନେଇଗଲେ । ବସ୍ତାଟିକୁ ତାଙ୍କ ବଗିଚାରେ ଗଭୀର ଗାତଟିଏ ଖୋଳି ପୋତିଦେଲେ । ତାଙ୍କୁ ସଫା ପୋଷାକ ବଦଳେ ଦେଲେ ଏବଂ ସୁମିଷ୍ଟ ଖାଦ୍ୟ ଖାଇବାକୁ ଦେଲେ । ସେଠାରେ ରାତି ଯାପନ କରି ପରଦିନ ସେ ନିଜ ଘରକୁ ଫେରିଲା ।

ବାପା ପୁଅଠାରୁ ସବୁ ଶୁଣିସାରି କହିଲେ ତାଙ୍କୁ ଆଉ ଟିକେ ପରୀକ୍ଷା କରିବା । ଆସନ୍ତା କାଲି ସେ ବଜାରରୁ ସଉଦା କରୁଥିବେ, ତୁ ସେତିକ-ବେଳେ ତାଙ୍କ ସଙ୍ଗେ କଳି ଲଗାଇ ଦେବୁ ଏବଂ ସବୁ ଲୋକଙ୍କ ସାମ୍ନାରେ ତାଙ୍କୁ ଜ ବୁଡ଼ାଏ ମାରିବୁ । ଦେଖିବା କ'ଣ ହେଉଛି ।

ବାପାଙ୍କ କହିବା ମୁତାବକ ପୁଅ ବଜାରରେ ସମସ୍ତଙ୍କ ଆଗରେ ବାପାଙ୍କ ଅଧାବନ୍ଧୁଙ୍କୁ ଜାବୁଡ଼ାଏ ମାରିଦେଲା । ଅଧାବନ୍ଧୁ ଜଣକ ଏକଥା ଆଶା କରିନଥିଲେ । ତଥାପି ସେ ଧୀର କଣ୍ଠରେ କହିଲେ—"ତମେ ଜଣେ ବେଇମାନ ପିଲା । ମୋର ଜଣେ ବନ୍ଧୁର ପୁଅଠାରୁ ମୁଁ ଏକଥା ଆଶା କରି ନଥିଲି । ତେବେ ମୁଁ ତମ ବାପାଙ୍କୁ ଏତେ ଭଲ ପାଏ ଯେ ତମର କିଛି କ୍ଷତି କରିପାରିବା ମୋ ଦେଇ ସମ୍ଭବ ନୁହେଁ । ତେଣୁ ତମେ ନିର୍ଭୟ ରୁହ । ମୁଁ ତମର ଗତକାଲିର କଥା କାହାକୁ କହିବି ନାହିଁ ।"

ତା ପରଦିନ ସନ୍ଧ୍ୟାବେଳେ ବାପା ପୁଅକୁ ପଠାଇଲେ ତାଙ୍କର ପୁରା ବନ୍ଧୁଙ୍କ ନିକଟକୁ । ପୁଅ ତାଙ୍କୁ ମଧ୍ୟ ସେଇ ପୁରୁଣା କଥା କହିଲା । ସେ ବନ୍ଧୁ ପୁଅକୁ ଘର ଭିତରକୁ ନେଇ ଅଣ୍ଡାକୁ ଲୁଚାଇବା ପାଇଁ ଯୋଗାଡ଼ କଲେ । ଦୈବାତ୍ ସେଦିନ ପ୍ରକୃତରେ ଗୋଟିଏ ଖୁନ୍ ହୋଇ ଯାଇଥାଏ । ପୋଲିସ ଦୋଷୀକୁ ଖୋଜୁଥାନ୍ତି । ସେମାନେ ଏ ଯୁବକ ବିଷୟରେ ଶୁଣିବାକୁ ପାଇଲେ ଏବଂ ତାଙ୍କୁ ଖୋଜି ଖୋଜି ଆସି ପୁରା ବନ୍ଧୁଙ୍କ ଘରେ ପହଞ୍ଚିଗଲେ ।

ପୁରାବନ୍ଧୁ ପ୍ରଥମେ ବହୁତ ବୁଝାଇବାକୁ ଚେଷ୍ଟା କଲେ ଯେ ସେ ଯୁବକ ପ୍ରକୃତରେ ଦୋଷୀ ନୁହେଁ । କିନ୍ତୁ ପୋଲିସ ମାନିଲେ ନାହିଁ ।

"ଏହି ସେ ଯୁବକ ଯେ ହତ୍ୟାକରି ଲୁଚିବାକୁ ଚେଷ୍ଟା କରୁଥିଲା" ଏହା କହି ସେ ନିଜର ଏକମାତ୍ର ପୁଅକୁ ପୋଲିସ୍ ହାତରେ ସମର୍ପି ଦେଲେ ।

ପୁଅ ବାପାଙ୍କ ପାଖକୁ ଫେରିଆସିଲା । ସେତେବେଳକୁ ସେ ବୁଝି ପାରିଥାଏ ପ୍ରକୃତ ବନ୍ଧୁତା କ'ଣ ।



# କେଉଁଠି ରାକ୍ଷସ ବାସକରେ ?

ବହୁଦିନ ପୂର୍ବେ ତିନିଜଣ ସାଙ୍ଗ ଏକ ବଡ଼ ସହରରେ ରହୁଥିଲେ । ସେମାନେ ସମସ୍ତେ ଧନୀ ଲୋକଙ୍କର ପୁଅ । ସେଥିପାଇଁ ସେମାନେ ତାଙ୍କର ଅଧିକାଂଶ ସମୟ ମଉଜ୍ ମଜଲିସ୍ କରି କଟାଉଥିଲେ । ସେମାନେ ତାଙ୍କର ପିତା ମାତାଙ୍କର ଉପଦେଶକୁ ମାନୁ ନଥିଲେ କାରଣ ତାଙ୍କ ପିତାମାତାଙ୍କର ଅଧିକ ସ୍ନେହ ତାଙ୍କୁ ଖରାପ କରି ଦେଇଥିଲା ।



ଦିନେ ସକାଳେ ତିନିସାଙ୍ଗ ହୋଟେଲରେ ବସିଥିବାବେଳେ ରାଜାଙ୍କ ଢେଙ୍ଗୁରା ଶୁଣିଲେ । ଢେଙ୍ଗୁରାଟି ଏକ ଭୟଂକର ରାକ୍ଷସ ବିଷୟରେ ଥିଲା । ରାକ୍ଷସ କୌଣସି ଅଜଣା ସ୍ଥାନରୁ ଆସି ସହର ନିକଟରେ ଜଙ୍ଗଲରେ ରହୁଥିଲା । ରାକ୍ଷସ କେବଳ ଜଙ୍ଗଲ ଭିତରେ ନରହି ପ୍ରତ୍ୟେକ ଦିନ ରାତିରେ ସହର ମଧ୍ୟରେ ବୁଲୁଥିଲା । ତାର କଳା ମଚମଚ ବିଶାଳ ଶରୀର ଅନ୍ଧାରରେ ଦେଖାଯାଉନଥିଲା କିନ୍ତୁ ତା'ର ଆଖି ଅଙ୍ଗାର ଭଳିଆ ଜଳୁଥିଲା ।

ରାକ୍ଷସ ସହର ମଧ୍ୟରେ କେବଳ ବୁଲୁଥିଲେ କିନ୍ତୁ ଅସୁବିଧାନଥିଲା ! ରାକ୍ଷସ ମଣିଷ ମାଂସ ଗୁଣ୍ଡି ଖାଉଥିଲା । ତେଣୁ ରାତିର ନିର୍ଜନ ରାସ୍ତାରେ ରାକ୍ଷସ ଶେରର କମ୍ବା ପୋଲିସଙ୍କୁ ଧରି ଖାଉଥିଲା । ରାକ୍ଷସ ବଡ଼ ବଡ଼ ପ୍ରାସାଦ ମଧ୍ୟରେ ପଶି ନ୍ୟାୟାଧୀଶ ଏବଂ ଲକ୍ଷପତିମାନଙ୍କୁ ମଧ୍ୟ ଖାଇବା ଆରମ୍ଭ କରି ଦେଇଥିଲା । ସେ ସମସ୍ତଙ୍କୁ ଗିଳି ଦେଉଥିଲା ।

ରାଜା ଘୋଷଣା କରିଥିଲେ, ଯେ ରାକ୍ଷସକୁ ମାରିବ ସେ ରାଜ୍ୟର ଅଧା ପାଇବ ଏବଂ ରାଜକୁମାରୀଙ୍କୁ ବିବାହ କରି ପାରିବ ।

ପ୍ରଥମ ସାଙ୍ଗ କହିଲା—"ରାକ୍ଷସ ସମସ୍ତଙ୍କୁ ଖାଉ ଅମର ଭାବିବାର କଅଣ ଅଛି ।"

ଦ୍ୱିତୀୟ ସାଙ୍ଗ କହିଲା—"ରାଜ୍ୟର ଅଧା ଏବଂ ରାଜକୁମାରୀ ବିଷୟରେ ଭାବି ମୋତେ ଲୋଭ ଲାଗୁଛି ।"

ତୃତୀୟ ସାଙ୍ଗ କହିଲା—"ଆମେ ଯଦି ରାକ୍ଷସକୁ ମାରି ନ ଦେଉ ତାହେଲେ ସେ ଆମ ହୋଟେଲର ସବୁତକ ମଦ ପିଇ ଦେଇ ଆମ ପାଇଁ କେବଳ ପିଇବା ପାଣି ରଖିଦେବ ।"

ତେଣୁ ତିନିସାଙ୍ଗ ସଙ୍ଗେ ସଙ୍ଗେ ରାକ୍ଷସକୁ ମାରି ଦେବାପାଇଁ ସ୍ଥିର କଲେ । ବାଡ଼ି ଏବଂ ଛୁରୀ ଧରି ସେମାନେ ଜଙ୍ଗଲ ମଧ୍ୟକୁ ଚାଲିଲେ । ସେମାନେ ମନେ ମନେ ସ୍ଥିରକଲେ ଯେ, "ରାଜ୍ୟର ଅଧା ରାଜ୍ୟକୁ ସେମାନେ ତିନିଭାଗ କରିବେ ଏବଂ ଗୋଟିଏ ରାଜକୁମାରୀ ବଦଳରେ ତିନୋଟି ରାଜକୁମାରୀ ପାଇଁ ରାଜାଙ୍କ ପାଖରେ ନିଜର ଦାବୀ ଜଣାଇବେ ।"

ଜଙ୍ଗଲ ପ୍ରାନ୍ତରେ ସେମାନେ ଗୋଟିଏ ବୁଢ଼ା ଲୋକକୁ ଦେଖିଲେ । ସେମାନଙ୍କର ପ୍ରକୃତି ଅନୁସାରେ ସେମାନେ ବୁଢ଼ା ଲୋକଟିକୁ ଚିଡ଼ାଇବାକୁ ଆରମ୍ଭ କରିଦେଲେ ଏବଂ କହିଲେ—"ଏତେ ବୟସ ହେବାପରେ ବି ତମେ କାହିଁକି ବଞ୍ଚିଛ ?" ବୁଢ଼ା ଲୋକଟି କହିଲା, କେହିହେଲେ ତା' ଯୌବନ ବଦଳରେ ମୋ ବାର୍ଦ୍ଧକ୍ୟକୁ ବଦଳାଇବାକୁ ଚାହୁଁନାହିଁ । ତାପରେ

ବୃଦ୍ଧଲୋକଟି ସେମାନଙ୍କୁ ଜଙ୍ଗଲରେ ବୁଲିବା ବିଷୟ ପଚାରିବାରୁ ସେମାନେ ତାଙ୍କ ଯାତ୍ରା ବିଷୟରେ କହିଲେ ।

ସବୁ ଶୁଣିଲା ପରେ ବୁଢ଼ା ଲୋକଟି କହିଲା—"ତମେମାନେ ସମୟ ନଷ୍ଟ ନକରି ଆଗକୁ ଚାଲିବା ଆରମ୍ଭକର । କିଛିବାଟ ଗଲା ପରେ ତମେମାନେ



ଗୋଟିଏ ଛୋଟ ପାହାଡ଼ ଉପରେ ଗୋଟିଏ ଗୁମ୍ଫା ଦେଖିବ । ତା ଭିତରେ ରାକ୍ଷସ ବର୍ତ୍ତମାନ ନିଘୋଡ଼ ନିଦରେ ଶୋଇଛି । ଏହା ହେଉଛି ସୁବର୍ଣ୍ଣ ସୁଯୋଗ । ତାକୁ ହତ୍ୟାକରି ଏବଂ ରାଜାଙ୍କ ପୁରସ୍କାର ଲାଭକର ।

ସେହି ଅନୁସାରେ ତିନିସାଙ୍ଗ ଆଗକୁ ଚାଲିଲେ ଏବଂ ପାହାଡ଼ ପାଖରେ ପହଞ୍ଚିଲେ । ତାପରେ, ସେମାନେ ବାଡ଼ି ଏବଂ ଛୁରୀ ଉଠାଇ ଧିରେ ଧିରେ ଆଗକୁ ଚାଲିଲେ ଏବଂ ଗୁମ୍ଫା ମୁହଁରେ ପହଞ୍ଚି ତା ମଧ୍ୟକୁ ବୁଦା ଉଡ଼ାଳରୁ ଚାହିଁଲେ ।

ସେମାନେ ଯାହା ଦେଖିଲେ ସେଥିରେ ତାଂକ ଆଖି ଝଲସି ଉଠିଲା ।

ଗୁମ୍ଫା ଭିତରେ ସେମାନେ ସୁନା, ରୁପା, ହୀରା, ମୋତି, ମାଣିକ୍ୟ ଏବଂ ଅନେକ ଦୁର୍ଲ୍ଲଭ ବସ୍ତୁ ଦେଖିଲେ ।

ସେହିକ୍ଷଣି ସେମାନେ ସ୍ଥିର କଲେ ଯେ ଯାହା ଘଟିଲେ ବି ଏ ସବୁ କଥା କାହାକୁ ଜଣାଇବେ ନାହିଁ ଏବଂ ତାଙ୍କର ପ୍ରଥମ ଚିନ୍ତା ହେଲା କିପରି ସେ ସବୁ ଧନରତ୍ନ ଘରକୁ ନେବେ । ସେମାନେ ଭାବିଲେ ଯଦି ଦିନବେଳେ ସେ ସବୁକୁ ସେମାନେ ଘରକୁ ନେବେ ତାହାହେଲେ ଚୋର ଡକାୟତ ଆକ୍ରମଣ କରିବେ, ଅନ୍ୟମାନେ ଈର୍ଷା ଦୃଷ୍ଟିରେ ଦେଖିବେ ଏବଂ ରଜା ତା ଉପରେ ବହୁତ କର ବସାଇ ଦେବେ । ଏସବୁ ଭାବି ସେମାନେ ରାତି ହେବାପାଇଁ ଅପେକ୍ଷା କଲେ ।

ଦିନ ସାରା ଭୋକ ଉପାସରେ କଟାଇବା ପାଇଁ ସେମାନେ ଠିକ୍ ଭାବିଲେନାହିଁ । ତେଣୁ ସବୁସାନ ସାଙ୍ଗକୁ ଅନ୍ୟ ଦୁଇଜଣ ଖାଦ୍ୟ ପଦାର୍ଥ ଏବଂ ଗୋଟିଏ ଥଳୀ ଆଣିବା ପାଇଁ ସହରକୁ ପଠାଇଲେ ।

ତିନିଜଣଙ୍କ ମଧ୍ୟରୁ ସାନ ସାଙ୍ଗ ସହରକୁ ଖାଦ୍ୟ ଏବଂ ପାନୀୟ ଆଣିବାକୁ ଯାଇଥିଲା ବେଳେ ଅନ୍ୟ ଦୁଇଜଣ ସାଙ୍ଗଙ୍କ ମନକୁ ପାପ ଛୁଇଁଲା । ସେମାନେ ମନେ ମନେ ସ୍ଥିର କଲେ ଯେ ସାନ ସାଙ୍ଗକୁ ମାରି ଦେଇ ସେମାନେ ଧନରତ୍ନକୁ ନିଜ ଭିତରେ ବାଣ୍ଟି ନେବେ ।

ଯେତେବେଳେ ସାନ ସାଙ୍ଗ ଖୁସି ମନରେ ସେଠାରେ ପହଞ୍ଚିଲା ସେତେବେଳକୁ ସଂଧ୍ୟା ହୋଇ ଆସିଥିଲା । ସାନ ସାଙ୍ଗ ପହଞ୍ଚିବା ମାତ୍ରେ ଅନ୍ୟ ଦୁଇ ସାଙ୍ଗ ତା ଉପରକୁ କୁଦି ପଡ଼ିଲେ ଏବଂ ତାକୁ ସଙ୍ଗେ ସଙ୍ଗେ



ମାରିଦେଲେ । ତାପରେ ସେମାନଙ୍କ ସାଙ୍ଗ ତାଙ୍କ ପାଇଁ ଆଣିଥିବା ଖାଦ୍ୟ ପଦାର୍ଥକୁ ଖୁସି ମନରେ ଖାଇଲେ ।

ସବୁ ସାନ ସାଙ୍ଗ ମଧ୍ୟ କମ ବୁଦ୍ଧିମାନ ନଥିଲା । ସହରକୁ ଯିବା ବାଟରେ ସେ ସବୁତକ ଧନରତ୍ନ ନିଜେ ନେଇଯିବା ପାଇଁ ଭାବିଥିଲା ଏବଂ ସେଥିପାଇଁ ଅନ୍ୟ ସାଙ୍ଗମାନଙ୍କ ପାଇଁ ଆଣିଥିବା ମଦରେ ଉତ୍କଟ ବିଷ ମିଶାଇ ଦେଇଥିଲା ।

ସୂର୍ଯ୍ୟ ଅସ୍ତ ହୋଇଗଲେ ଏବଂ ତିନି ସାଙ୍ଗଙ୍କର ମୃତ ଶରୀର ଜଙ୍ଗଲ ମଧ୍ୟରେ ପଡ଼ି ରହିଥିଲା ।

ସେମାନେ ରାକ୍ଷସର ସନ୍ଧାନରେ ଯାଇଥିଲେ । କିନ୍ତୁ ସେମାନେ ଜାଣି ନଥିଲେ ଯେ ସଇତାନ ପ୍ରକୃତ ତାଙ୍କ ନିଜ ଭିତରେ ବାସ କରୁଛି ଏବଂ ସେହି ରାକ୍ଷସ ପ୍ରକୃତ ତାଙ୍କୁ ଗ୍ରାସ କରିଦେଲା ।



## ବଗ ଗୋଟିଏ ଏକ ଗୋଡ଼ିଆ ଜୀବ !

ଜଣେ ଭଦ୍ରଲୋକ ଥାଆନ୍ତି । ସେ ବଗ ମାଂସ ଖାଇବାକୁ ଖୁବ ଭଲ ପାଆନ୍ତି । ଯେତେବେଳେ ସମୟ ପାଆନ୍ତି କାନ୍ଧରେ ବନ୍ଧୁକ ପକାଇ ବଗ ଶିକାର କରିବାକୁ ବାହାରି ଯାଆନ୍ତି ।

ଦିନକର କଥା । ସେ ଦିନ ସନ୍ଧ୍ୟାବେଳେ ସେ ଗୋଟିଏ ସୁନ୍ଦର ମୋଟିଆ ବଗଟିଏ ଶିକାର କଲେ । ସେଇଟିକୁ ଆଣି ରୋଷୁଣିଆକୁ ଦେଲେ ଏବଂ ଭଲକରି ରୋଷେଇ କରିବାକୁ କହିଲେ ।

ବାବୁଙ୍କ ହୁକୁମ । ରୋଷୁଣିଆ ଅତି ଯତ୍ନରେ ରୋଷେଇ କଲା । ରନ୍ଧା ସରିଲା । ତରକାରିର ସ୍ୱାଦ ଭଲ ହୋଇଛି ନା ନାହିଁ ଜାଣିବା ପାଇଁ



ରୋଷୁଣିଆ ଟିକଏ ମାଉଁସ ଗୋଟିଏ ଗୋଡ଼ରୁ ଆଣି ପାଟିରେ ଦେଲା । ଆଃ ! କି ସ୍ୱାଦ ! ରୋଷୁଣିଆର ପାଟିରୁ ଖାଲି ଲାଳ ବହିଲା । "ହଁ ମ, ଆଉ ଟିକଏ ଖାଇଲେ କଣ ବାବୁ ଜାଣି ପାରିବେ ।" ଏହା ଭାବି ସେ ଟିକଏ ଟିକଏ ଖାଇ ଖାଇ ପୁରା ଗୋଟିଏ ଗୋଡ଼ ଖାଇ ଦେଲା ।

ଖାଇଉ ଦେଲା । ଖାଇସାରିଲା ପରେ ତା ମୁଣ୍ଡରେ ଚିନ୍ତା ପଶିଲା କଣ କରିବ ? ବାବୁ ଜାଣିଲେ ତ ରକ୍ଷା ନାହିଁ । ତେଣୁ ସେ ବଗ ତରକାରୀକୁ ପ୍ଲେଟରେ ଏପରି ଭାବରେ ସଜାଇଲା ଯେପରିକି ତାହା ଗୋଟିଏ ଗୋଡ଼ ବଗ ପରି ଜଣାପିବ । ତାପରେ ସେ ବାବୁଙ୍କୁ ପରଶି ଦେଲା । ଭାବିଲା ବାବୁ ଅନ୍ୟ-ମନସ୍କ ଭାବରେ ଖାଇଦେବେ । ଗୋଟିଏ ଗୋଡ଼ ନାହିଁ ବୋଲି ଜାଣି ପାରିବେ ନାହିଁ ।

କିନ୍ତୁ ସେଦିନ ତରକାରୀ ଏତେ ବଢ଼ିଆ ହୋଇଥିଲା ଯେ ବାବୁ ଆନନ୍ଦରେ ଦେଖି ଦେଖି ଖାଉଥାନ୍ତି । ବାବୁ ଭାବୁଥାନ୍ତି "ଆଃ ! ବଗର ଦିଟି ହେଲେ ଗୋଡ଼ ଥା'ଆନ୍ତା କି ?" କିନ୍ତୁ ତତ୍‌କ୍ଷଣାତ୍ କଥା ଘୁରିଲା । ଯେତେବେଳେ ଦୁଇଟି ଗୋଡ଼ରୁ ଗୋଟିଏ ଗୋଡ଼ ସେ ପାଇଲେ ନି, ସେ ଆଶ୍ଚର୍ଯ୍ୟ ହୋଇ-ଗଲେ । ରାନ୍ଧୁଣିଆକୁ ଡ଼ାକ ପକାଇଲେ ।

ରାନ୍ଧୁଣିଆ ବିଚରା କଣ ଉତ୍ତର ଦେବ ଜାଣି ପାରିଲାନି । ଡରରେ ତା ପାଟିରୁ ବାହାରିଗଲା "ଆଜ୍ଞା, ବଗ ପରି ଗୋଟିଏ ଏକ ଗୋଡ଼ିଆ ପ୍ରାଣୀ" ।



ବାବୁ ରାଗିଗଲେ । କହିଲେ—ମୁଁ ବର୍ଷ ବର୍ଷ ଧରି ବଗ ଶିକାର କରୁଛି ଏବଂ ଖାଉଛି । ମୁଁ ଆଜି ପର୍ଯ୍ୟନ୍ତ ଜାଣିଛି ଯେ ବଗର ଦୁଇଟି ଗୋଡ଼ । ଆଉ ତୁ ଏବେ କ'ଣ କହୁଛୁ ନା ବଗର ଗୋଟିଏ ଗୋଡ଼ ? ଆଚ୍ଛା ଠିକ୍ ଅଛି । ବର୍ତ୍ତମାନ ମଧ୍ୟ ହ୍ରଦକୂଳରେ ବଗସବୁ ଥିବେ । ମୋ ସାଙ୍ଗରେ ଚାଲ୍ ଏବଂ ଗୋଟେଗୋଡ଼ିଆ ବଗ ଦେଖା ।" ଏହା କହି ବାବୁ ରାନ୍ଧୁଣିଆକୁ ଟାଣି ଟାଣି ହ୍ରଦ ପାଖକୁ ନେଲେ ।

ସେତେବେଳେ ଚନ୍ଦ୍ରକିରଣ ପଡ଼ୁଥାଏ । ବଗ ଗୁଡ଼ିଏ ହ୍ରଦ କୂଳରେ ସ୍ଥିର ଭାବରେ ଠିଆ ହୋଇଥାନ୍ତି । ବଗମାନେ ତ ଶୋଇଲାବେଳେ ଗୋଟିଏ ଗୋଡ଼ ଟେକି ଦେଇ ଗୋଟିଏ ଗୋଡ଼ରେ ଠିଆ ହୋଇ ରହନ୍ତି ।

ସେଇଆଡ଼କୁ ଦେଖେଇ ରାନ୍ଧୁଣିଆ କହିଲା "ଦେଖନ୍ତୁ ବାବୁ ଦେଖନ୍ତୁ, ସେ ସମସ୍ତଙ୍କର ଗୋଟିଏ ଲେଖାଏଁ ଗୋଡ଼ ଅଛି।"

"ଆଚ୍ଛା।" କହି ବାବୁ ରାଗିଯାଇ ଜୋରରେ ତାଳିଟାଏ ମାରି-ଦେଲେ। ବଗଗୁଡ଼ିକଙ୍କର ନିଦ ଭାଙ୍ଗିଗଲା। ସେମାନେ ତାଙ୍କର ଆର ଗୋଡ଼ଟିମାନ ଲମ୍ବାଇ ଦେଲେ।



"ବର୍ତ୍ତମାନ" ବାବୁ ପଚାରିଲେ "ବଗର ଗୋଟିଏ ଗୋଡ଼ ନା ଦୁଇଟି ?"

"ଆଜ୍ଞା ବାବୁ, ଆପଣ ଖାଇଲା ବେଳେ ଜୋରରେ ତାଳିଟାଏ ମାରିଲେ ନାହିଁ କାହିଁକି ? ତାହେଲେ ବଗର ଦୁଇଟା ଗୋଡ଼ ଦେଖିଯାଇ-ଥାନ୍ତା "କାରଣ ଆପଣ ଏବେ ତାଳି ମାରିଲାରୁ ଯିନା ବଗର ଦୁଇଟି ଗୋଡ଼ ହେଲା, ନହେଲେ ତ ଗୋଟିଏ ଥିଲା"—ରାନ୍ଧୁଣିଆ କହିଲା।

ବାବୁ ବୁଝିପାରିଲେ ନାହିଁ କଣ ଉତ୍ତର ଦେବେ। ସେ ସବୁକଥା ବୁଝିପାରି ହସି ପକାଇଲେ। କହିଲେ—"ଠିକ୍ ଅଛି, ଆଜି ତତେ ଛାଡ଼ି ଦେଉଛି। କିନ୍ତୁ ଆଉଦିନେ ଯେପରି ବଗର ଦୁଇଟି ଗୋଡ଼ ପାଇଁ ମୋତେ ତରକାରୀ ପାଖରେ ତାଳି ମାରିବାକୁ ନ ପଡ଼େ।"

ରାନ୍ଧୁଣିଆ ଲାଜରେ ମୁଣ୍ଡ ତଳକୁ କରିଲା।

●

# ଶ୍ରେଷ୍ଠ ସେଲୁନ

ଭାରତର ଗୋଟିଏ ଛୋଟ ସହର । ସେଠାରେ ରହୁଥାନ୍ତି ଜଣେ ବଡ଼ ଧନୀ ଭଦ୍ର ଲୋକ । ବାଳ ରଖିବା ତାଙ୍କର ଗୋଟିଏ ସଉକ । ସେଥିପାଇଁ ସେ ଜଣେ ବୁଢ଼ା ବାରିକକୁ ତାଙ୍କ ବାଳ କାଟିବା ପାଇଁ ନିଯୁକ୍ତ କରିଥାନ୍ତି । ବୁଢ଼ା ବାରିକ ଛଡ଼ା ଅନ୍ୟ କାହାକୁ ତାଙ୍କ ବାଳ କାଟିବାକୁ ଦିଅନ୍ତି ନାହିଁ ।



ବୁଢ଼ା ବାରିକଟିର ଗୋଟିଏ ସୁନ୍ଦର ସେଲୁନ (ଯେଉଁଠାରେ ବାଳ କଟାଯାଏ ଏବଂ ଖିଅର କରାଯାଏ) ଥିଲା । ସେଠାରେ ସେ ତିନିପୁଅଙ୍କ ସହ କାମ କରୁଥିଲା । କିନ୍ତୁ ବୁଢ଼ା ଯେତେ ରୋଜଗାର ଏକୁଟିଆ କରୁଥିଲା, ତିନିପୁଅ ମିଶି ମଧ୍ୟ ସେତିକି ରୋଜଗାର କରିପାରୁ ନଥିଲେ ।

ଦିନେ ବୁଢ଼ା ବାରିକଟି ମରିଗଲା ।

ତାପରେ ତିନିପୁଅଙ୍କ ମଧ୍ୟରେ କଳି ଲାଗିଲା କିଏ ଧନୀ ଲୋକଙ୍କ

ବାଳକାଟିବ ? କିଏ ସେ ତାଙ୍କର ନିଜ ବାରିକ ହେବ ? ବହୁ ସମୟ ପରେ ସେମାନେ ସ୍ଥିର କଲେ ତିନିହେଁ ସେ ଧନୀ ଭଦ୍ରଲୋକଙ୍କ ପାଖକୁ ଯିବେ । ଯିଏ ଏ ତିନିଜଣଙ୍କ ଭିତରୁ ଯାହାକୁ ବାଛିବେ, ସେ ହେବ ଭଦ୍ର ଲୋକଙ୍କ ନିଜ ବାରିକ ।

ତିନି ଭାଇ ଯାଇ ପହଞ୍ଚିଲେ ଭଦ୍ରଲୋକଙ୍କ ପାଖରେ । ତାଙ୍କୁ ଅନୁରୋଧ କଲେ ବାପାଙ୍କ ସ୍ଥାନରେ ତିନିଜଣଙ୍କ ମଧ୍ୟରୁ ଜଣକୁ ନିଯୁକ୍ତ ହେବାକୁ ।

ଭଦ୍ରଲୋକ ତାଙ୍କୁ ବୁଝାଇଲେ "ଦେଖ, ତମ ବାପା କେବଳ ମୋର ବାରିକ ନଥିଲେ, ଜଣେ ବନ୍ଧୁ ମଧ୍ୟ ଥିଲେ । ମୁଁ ତାଙ୍କ ସହ ମୋର ସମସ୍ୟା ସବୁ ଆଲୋଚନା କରୁଥିଲି । ତାଙ୍କ ମୃତ୍ୟୁ ସହ ମୋର ବାଳ ରଖିବାର ସଉକ ମଧ୍ୟ ମରି ଯାଇଛି । ଯାହାକୁ ଜଣକୁ ତ ମୁଁ ତମ ବାପାଙ୍କ ଜାଗାରେ ରଖିବି । ତେଣୁ ତମମାନଙ୍କ ମଧ୍ୟରୁ ଜଣକୁ ରଖିଲେ କିଛି କ୍ଷତି ନାହିଁ । ତେବେ କାହାକୁ ରଖିବି ସେଇଆ ହେଉଛି ସମସ୍ୟା ।"

ତାପରେ କିଛି ସମୟ ରହିଯାଇ ଚିନ୍ତାକଲେ । ପଚାରିଲେ "ତମେ-ମାନେ କଣ ଏକାଠି ସେଇ ପୁରୁଣା ସେଲୁନରେ କାମ କରୁଛ ?" "ନା, ଆମେ ତିନୋଟି ଅଲଗା ଅଲଗା ସେଲୁନ୍ ପ୍ରଧାନ ରାସ୍ତାରେ କରିଛୁ ।"

"ତମ ସେଲୁନ ଆଗରେ ତାର ନାଁ ଲେଖିଛ ?"

"ନାଁ।"

"ତେବେ ଆଜି ତମେମାନେ ତମ ସେଲୁନର ନାଁ ସେଲୁନ୍ ଆଗରେ ଲେଖିଦିଅ । ମୁଁ କାଲି ଗଲାବେଳେ ଦେଖିବି । ଯିଏ ନାଁ ଦ୍ୱାରା ନିଜର ଶ୍ରେଷ୍ଠତ୍ୱ ଜାହିର କରିପାରିବ, ମୁଁ ତାକୁ ନିଯୁକ୍ତ କରିବି ।"

ତିନି ଭାଇ ଫେରି ଆସିଲେ ଏବଂ ନିଜ ନିଜ ସେଲୁନ୍ ଆଗରେ ନାମ ଫଳକ ଝୁଲାଇବା ପାଇଁ ଲାଗି ପଡ଼ିଲେ । ପରଦିନ ସକାଳ ପୂର୍ବରୁ ତିନିଜଣଙ୍କ ଦୋକାନ ଆଗରେ ନାମ ଲେଖା ହୋଇ ବୋର୍ଡ଼ ଝୁଲୁଥିବାର ଦେଖାଗଲା ।

ପରଦିନ ସକାଳୁ ଭଦ୍ରଲୋକ ଘୋଡ଼ା ଚଢ଼ି ପ୍ରଧାନ ରାସ୍ତାରେ ଗଲେ । ପ୍ରଥମେ ପଡ଼ିଲା ବଡ଼ ଭାଇର ସେଲୁନ୍ । ନାଁ ଦିଆ ହୋଇଥାଏ "ଭାରତର ଶ୍ରେଷ୍ଠ ସେଲୁନ" । ତାର ଗର୍ବ ଦେଖି ଭଦ୍ରଲୋକ ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ତାଙ୍କ ବିସ୍ମୟର ସୀମା ରହିଲା ନାହିଁ, ସେ ଯେତେବେଳେ ମଝିଆ ଭାଇର ସେଲୁନ୍‌ର ନାମ "ପୃଥିବୀର ଶ୍ରେଷ୍ଠ ସେଲୁନ୍" ବୋଲି ଦେଖିଲେ । ସେମାନଙ୍କ ଗର୍ବ ଦେଖି ଭଦ୍ରଲୋକ ବ୍ୟଥିତ ହେଲେ ।




ତାପରେ ସେ ପହଞ୍ଚିଲେ ସାନଭାଇର ସେଲୁନ ନିକଟରେ । ତା ସେଲୁନ୍ ସମ୍ମୁଖରେ ଲେଖା ହୋଇଥାଏ "ଏ ରାସ୍ତାର ଶ୍ରେଷ୍ଠ ସେଲୁନ୍" । ଭଦ୍ରଲୋକ କିଛି ସମୟ ଦେଖିଲେ । ତା'ପରେ ହସିଉଠିଲେ ଏବଂ ସାନଭାଇକୁ ନିଜର ବାରିକ ରୂପେ ନିଯୁକ୍ତ ଦେଲେ ।

ବଡ଼ଭାଇ ଦୁଇଜଣ ପ୍ରଥମେ ବୁଝି ପାରିଲେ ନାହିଁ । କିନ୍ତୁ ପରେ ବୁଝିଲେ ଯେ "ଏ ରାସ୍ତାର ଶ୍ରେଷ୍ଠ ସେଲୁନ୍" ରାସ୍ତାର ସମସ୍ତ ସେଲୁନ ଠାରୁ ଶ୍ରେଷ୍ଠ ବୋଲି ବୁଝାଉଛି ଏବଂ ରାସ୍ତାର ସମସ୍ତ ସେଲୁନ୍ ମଧ୍ୟରେ ସେମାନଙ୍କର "ପୃଥିବୀର ଶ୍ରେଷ୍ଠ ସେଲୁନ" "ଭାରତର ଶ୍ରେଷ୍ଠ ସେଲୁନ" ମଧ୍ୟ ଅନ୍ତର୍ଭୁକ୍ତ । ସେମାନଙ୍କର ମୁହଁ ଲାଜରେ ଲାଲ ପଡ଼ିଗଲା ।

# ଓଜୀରଙ୍କ ଶେଷ ହସ

ଗୋଟିଏ ଦେଶରେ ଜଣେ ଯୁବକ ସୁଲତାନ ରାଜତ୍ୱ କରୁଥାନ୍ତି । ତାଙ୍କର ଥାଆନ୍ତି ଜଣେ ବୃଦ୍ଧ ଉଜୀର ବା ମନ୍ତ୍ରୀ । ତାଙ୍କର ପରାମର୍ଶରେ ରାଜ୍ୟ ସୁଖ ଶାନ୍ତିରେ ଚାଲୁଥାଏ ।

ବୃଦ୍ଧ ଉଜୀରଙ୍କର ଗୋଟିଏ ଅଭ୍ୟାସ ଥାଏ । ସେ ଯେତେବେଳେ ଟିକିଏ ସମୟ ପାଆନ୍ତି ପଢ଼ାପଢ଼ିରେ ଲାଗିଯାଆନ୍ତି ଏବଂ ଯେକୌଣସି ବିଦ୍ୱାନ ବ୍ୟକ୍ତିଙ୍କୁ ଭେଟନ୍ତି ସେମାନଙ୍କ ସହ ଦର୍ଶନ ଶାସ୍ତ୍ର ଆଲୋଚନା କରନ୍ତି । ସେ ଯାହା ଜ୍ଞାନଲବ୍ଧ କରନ୍ତି ତାକୁ ଗୋଟିଏ ଖାତାରେ ଲେଖିରଖନ୍ତି । ସେ ଖାତାଟିକୁ ସବୁବେଳେ ପାଖରେ ରଖିଥାନ୍ତି । କିନ୍ତୁ କେତେକ ଲୋକଙ୍କର ଧାରଣା ଥାଏ ଯେ ଉଜୀରଙ୍କ ସେ ଖାତାରେ ତନ୍ତ୍ରମନ୍ତ୍ର ଗୁଡ଼ିଏ ଲେଖା ହୋଇଛି, । ତେଣୁ ଉଜୀର ତାକୁ ପାଖରୁ ଅଲଗା କରୁ ନାହାନ୍ତି ।

ବୃଦ୍ଧ ଉଜୀରଙ୍କୁ କ୍ଷମତାରୁ ହଟାଇବାକୁ କେତେକ ପାରିଷଦ ଚକ୍ରାନ୍ତ କଲେ । ସେମାନେ ସୁଲତାନଙ୍କୁ କହିଲେ "ଜାହାଁପନା, ସୁଲତାନ ଭାବରେ ଆପଣଙ୍କର ଏ ରାଜ୍ୟର ସମସ୍ତ ଜିନିଷ ଉପରେ ଅଧିକାର ଅଛି । ତେବେ ଉଜୀର ତାଙ୍କର ତନ୍ତ୍ରମନ୍ତ୍ର ଖାତାଟି ଆପଣଙ୍କୁ ଦେଉ ନାହାଁନ୍ତି ବା କାହିଁକି ?"

ସୁଲତାନ ଅବୁଝା । ସେ ବି ଭାବିଲେ ଯତକଥା, ଉଜୀରଙ୍କ ସେ ଖାତା ଉପରେ ତ ମୋର ଅଧିକାର ଅଛି । ତେବେ ସେ ନ ଦେବେ ବା କାହିଁକି ?

ମନେ ମନେ ଗୋଟିଏ ଉପାୟ ପାଞ୍ଚି ଉଜୀରଙ୍କୁ ଡ଼କାଇ ପଠାଇଲେ ସୁଲତାନ୍ । ତାଙ୍କୁ ଅନୁରୋଧ କଲେ ସାଙ୍ଗରେ ଖେଳିବା ପାଇଁ । ଖେଳର ସର୍ତ୍ତ ରହିଲା ଯେ ଜିତିବ ସେ ଅନ୍ୟ ଜଣକୁ ଯାହା ମାଗିବ, ହାରିବା ଲୋକ ଦେବାକୁ ବାଧ୍ୟହେବ ।

ଖେଳ ଆରମ୍ଭ ହେଲା । ଜାଲ୍ କାରସାଦ କରି ସୁଲତାନ୍ ଖେଳରେ ଜିତିଗଲେ । ଉଜୀରଙ୍କୁ କହିଲେ "ତମେ ତ ଖେଳରେ ହାରିଲ । ଏଥର ସର୍ତ୍ତ ଅନୁସାରେ ଯାହା ମୁଁ ମାଗିବି ତାହା ତୁମେ ଦେବାକୁ ବାଧ୍ୟ । ବର୍ତ୍ତମାନ ମୁଁ ତୁମକୁ ତୁମର ଟିପା ଖାତାଟି ମାଗୁଛି । ସେଇଟି ମତେ ଦିଅ ।"

ଏକଥା ଶୁଣି ଉଜୀର ଆଶ୍ଚର୍ଯ୍ୟ ହୋଇଗଲେ । ସେ ସୁଲତାନଙ୍କୁ ଅନୁରୋଧ କଲେ ଅନ୍ୟ କିଛି ମାଗିବାକୁ । କିନ୍ତୁ ସୁଲତାନ ନଛୋଡ଼ବନ୍ଧା । ସେ ବାରମ୍ବାର ଟିପାଖାତାଟି ମାଗିଲେ । ଉଜୀର ତାଙ୍କୁ କହିଲେ "ସୁଲତାନ ! ଆପଣ ଯଦି ମତେ ଭଲ ପାଉନାହାନ୍ତି ତେବେ ମୋର ସମସ୍ତ ଧନ ସମ୍ପତ୍ତି କୋଠା ବାଡ଼ି ସବୁ ନେଇ ଯାଆନ୍ତୁ । ମୁଁ ମୋ ଶିକ୍ଷାକୁ ଜୀବନଠାରୁ ବେଶି ଭଲ ପାଏ । ମୁଁ ତାକୁ ଛାଡ଼ି ପାରିବି ନାହିଁ ।"

ସୁଲତାନ ରାଜି ହେଲେ ନାହିଁ । ତାଙ୍କର ପ୍ରକୃତରେ କିଛି ଲୋଭ ନଥିଲା ଟିପା ଖାତାଟି ଉପରେ । କିନ୍ତୁ ରାଜା ପଣିଆ ଜାହିର କରିବା ପାଇଁ ଓ ନିଜର ଅହଂକାର ଦେଖାଇବା ନିମନ୍ତେ ସେ କେବଳ ଟିପା ଖାତାଟି ମାଗିବାକୁ ଲାଗିଲେ ଓ ନ ଦେଲେ ମୃତ୍ୟୁଦଣ୍ଡର ଧମକ ଦେଲେ ।

ବର୍ତ୍ତମାନ ଉଜୀର ବୁଝିପାରିଲେ ଯେ ସୁଲତାନ କେତେ ସ୍ୱାର୍ଥପର । ସାମାନ୍ୟ ଅଧିକାର ଜାହିର କରିବା ପାଇଁ ସେ ଉଜୀରଙ୍କ ପୂର୍ବର ସମସ୍ତ ଭଲ କାମକୁ ଭୁଲିଗଲେ । ରାଜ୍ୟର ତଥା ସୁଲତାନଙ୍କର ଉନ୍ନତି ପାଇଁ ଉଜୀରଙ୍କର ଅବଦାନକୁ ସେ ପାସୋରି ଗଲେ । ଏପରି ଏକ ଅବିବେକୀ, ଅହଂକାରୀ ସୁଲତାନଙ୍କୁ ବୁଝାଇବା ବେକାର ଜାଣି ଉଜୀର ଘରକୁ ଗଲେ । କିଛି ସମୟ ପରେ ଖାତାଟି ଆଣି ସୁଲତାନଙ୍କୁ ଦେଲେ ।

କହିଲେ "ହେ ସୁଲତାନ, ମୋ ଶିକ୍ଷାକୁ ହରାଇ ମୁଁ ବେଶିଦିନ ବଞ୍ଚିପାରିବି ନାହିଁ ଏହା ନିଶ୍ଚିତ । କିନ୍ତୁ ମୋ ଖାତାଟି ଯୋଗୁଁ ଆପଣ ମଧ୍ୟ ସବୁଦା ମନସ୍ତାପର ରହିବେ ।"

ଯେଉଁକେତେକ ପାରିଷଦ ଉଜୀରଙ୍କ ଶତ୍ରୁ, ସେମାନେ ମଜା ଦେଖୁଥିଲେ । ବର୍ତ୍ତମାନ ସୁଲତାନଙ୍କୁ ବୁଝାଇ ଦେଲେ "ସୁଲତାନ, ଏଭଳି ଲୋକଙ୍କୁ ଜୀବନ୍ତ ଛାଡ଼ିଦେବା ଆପଣଙ୍କ ପକ୍ଷରେ କ୍ଷତିକାରକ ହେବ ।"

ତହୁଁ ସୁଲତାନ କହିଲେ "ହେ ଉଜୀର ! ତମେ ଯଦି ଚାହୁଁଛ ଯେ ଅଳ୍ପଦିନରେ ଦୁଃଶ୍ଚିନ୍ତାରେ ପ୍ରାଣତ୍ୟାଗ କରିବ, ତେବେ ତମ ଦୁଃଶ୍ଚିନ୍ତା ମୁଁ ଦୂର କରି ଦେଉଛି । ମୁଁ ବର୍ତ୍ତମାନ ତୁମ ଶିରଚ୍ଛେଦର ଆଦେଶ ଦେଉଛି ।"

ସମସ୍ତେ ଆବାକ୍ ହୋଇ ଚାହିଁଲେ । କିନ୍ତୁ ଉଜୀରଙ୍କ ମୁହଁରେ ଦୁଃଖର ଲେଶ ମାତ୍ର ଚିହ୍ନ ନ ଥାଏ । ସେ କହିଲେ "ହେ ସୁଲତାନ ! ଆପଣ ପ୍ରକୃତରେ ଜଣେ ଦୟାଳୁ ଶାସକ । ଆପଣଙ୍କ ଏ ଆଦେଶ ଯୋଗୁଁ ମୁଁ ଆପଣଙ୍କ ନିକଟରେ କୃତଜ୍ଞ । ମୁଁ ଏହାର ପ୍ରତିଦାନରେ ଆପଣଙ୍କୁ କିଛି ଦେଇଯିବାକୁ ଚାହେଁ । ମୋର ମୃତ୍ୟୁର କିଛି ସମୟ ଭିତରେ ମୁଁ



ଆପଣଙ୍କୁ ଗୋଟିଏ ଯାଦୁ ଦେଖାଇବି । ମୋର ଶିରଚ୍ଛେଦ ହେବାପରେ ଆପଣ କଟା ମୁଣ୍ଡଟିକୁ ଆଣି ଆପଣଙ୍କ ସମ୍ମୁଖରେ ରଖିବେ । ଆପଣତ ଶୁଣିଛନ୍ତି ମୋର ଖାତାଟି ଯାଦୁ ମନ୍ତ୍ରରେ ଭର୍ତ୍ତି ହୋଇଛି । କଟାମୁଣ୍ଡ

ସମ୍ମୁଖରେ ଆପଣ ଖାତାଟିର ଗୋଟି ଗୋଟି କରି ପୃଷ୍ଠା ଦେଖିଯିବେ । ନାଲି କାଳିରେ ଲେଖା ହୋଇଥିବା ପୃଷ୍ଠାଟି ଦେଖିବା ପର୍ଯ୍ୟନ୍ତ ଦେଖୁଥିବେ । ସେହି ପୃଷ୍ଠାଟି ପଢ଼ିଲା ପରେ ଆପଣ ଦେଖିବେ ମୋର କଟା ହୋଇଥିବା ମୁଣ୍ଡଟି ହସିବ ଏବଂ କଥା କହିବ ।

ଯାଦୁ ଦେଖିବା ନିମନ୍ତେ ସୁଲତାନ ବ୍ୟସ୍ତ ହୋଇପଡ଼ିଲେ । ଅବିଳମ୍ବେ ଉଜୀରଙ୍କ ମସ୍ତକ କଟାହୋଇ ଆସିଲା । ତାକୁ ଟେବୁଲ ଉପରେ ରଖି ସୁଲତାନ ଖାତା ଖୋଲିଲେ ।

ଖାତାଟିର ପୃଷ୍ଠାଗୁଡ଼ିକ ଲାଗିଯାଇଥାଏ । ଅଭ୍ୟାସ ଅନୁସାରେ ସୁଲତାନ ଆଙ୍ଗୁଠି ଟିପକୁ ଜିଭରେ ମାରି ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଚାଲିଥାଆନ୍ତି । ତାଙ୍କୁ ଘେରି ରହି ଅନ୍ୟ ସଭାସଦ୍‌ମାନେ ଚାହିଁ ଥାଆନ୍ତି ଆଗ୍ରହରେ ।

ଶେଷ ପୃଷ୍ଠା ପର୍ଯ୍ୟନ୍ତ ଓଲଟାଇ ଗଲେ ସୁଲତାନ । ସେତେବେଳକୁ ତାଙ୍କର ମୁଣ୍ଡ ଝିମ୍‌ଝିମ୍ କରୁଥାଏ । କିନ୍ତୁ ସେ କଷ୍ଟକୁ ଭୃକ୍ଷେପ ନ କରି ସେ ନାଲି ଅକ୍ଷରରେ ଲେଖାଥିବା ଧାଡ଼ି କେତୋଟି ପଢ଼ିଲେ । ଲେଖାଥିଲା—



"ଖାତାର ପ୍ରତି ପୃଷ୍ଠାରେ ଅତି ମାରାତ୍ମକ ବିଷବୋଳା ଯାଇଛି । ଆପଣ ଆଙ୍ଗୁଠି ଟିପରେ ପୃଷ୍ଠା ଓଲଟାଇ, ଟିପକୁ ଜିଭରେ ମାରିବାରୁ ସେ ବିଷ ଆପଣଙ୍କ ଦେହରେ ଚରି ଗଲଣି । ତେଣୁ ହେ ଅକୃତଜ୍ଞ ସୁଲତାନ ! ଆପଣଙ୍କ ମୃତ୍ୟୁ ସୁନିଶ୍ଚିତ ।"

ଭୟଭୀତ ସୁଲତାନ ଅତି କଷ୍ଟରେ ଚାହିଁଲେ କଟା ମୁଣ୍ଡକୁ । ତାଙ୍କୁ ଲାଗିଲା ଯେପରି ମୁଣ୍ଡଟି ତାଙ୍କୁ ଦେଖି ହସୁଛି ।

ସୁଲତାନଙ୍କ ଶରୀର ଗଡ଼ିପଡ଼ିଲା ସିଂହାସନ ଉପରୁ । ସେତେବେଳକୁ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା ।

●

# ଧୈର୍ଯ୍ୟ ରଖିଲେ ସବୁ ସମ୍ଭବ

ବାଗଦାଦ୍ ସହରରେ "ଆବୁ" ନାମରେ ଜଣେ ବଡ଼ ବଣିକ ରହୁଥିଲେ । ତାଙ୍କର ରୋଜଗାର ଥିଲା ପ୍ରଚୁର । କିନ୍ତୁ ଥରେ ତାଙ୍କର ଏପରି ଖରାପ ସମୟ ପଡ଼ିଲା ଯେ ସେ ତାଙ୍କର ସମସ୍ତ ଧନ ସମ୍ପତ୍ତି ହରାଇ ବସିଲେ । ତାଙ୍କର ବେପାର ବଣିଜ ନଷ୍ଟ ହୋଇଗଲା । ତାଙ୍କ ପାଖରେ ପଇସାଟିଏ ରହିଲାନି ବେପାର କରିବା ପାଇଁ । ଏପରିକି ସେ ଯେଉଁ ସୁନ୍ଦର ବିରାଟ ଭଆସଟିରେ ରହୁଥିଲେ, ସେଇଟିକୁ ମଧ୍ୟ ଋଣଦାତାମାନେ ଦଖଲ କରିନେଲେ ।

ସହରର ଶେଷସୀମାରେ ଆବୁଙ୍କର ଗ୍ଲୋଟ ଜାଗାଟିଏ ଥାଏ । ଏଥର ଆବୁ ଯାଇ ସେଇଠି ବାସକଲେ । ନିଜର ପେଟ ପୋଷିବା ପାଇଁ ତାଙ୍କୁ ପ୍ରତିଦିନ ବହୁ ପରିଶ୍ରମ କରିବାକୁ ପଡ଼ିଲା ।

ଗୋଟିଏ ଦିନ ଭୀଷଣ ବର୍ଷା ହେଲା । ଆବୁ କାମକୁ ଯାଇ ପାରିଲେ ନାହିଁ । ତେଣୁ ସେଦିନଟା ସାରା ତାଙ୍କୁ ଉପାସରେ ରହିବାକୁ ହେଲା । ଆବୁଙ୍କୁ ଏହା ଭାରି ବାଧିଲା । ସେ କାନ୍ଦି କାନ୍ଦି ପ୍ରାର୍ଥନା କଲେ ଆଲ୍ଲାଙ୍କୁ ଏ ଦୁଃଖରୁ ରକ୍ଷା କରିବା ପାଇଁ ।

ସେଦିନ ରାତିରେ ଆବୁ ଗୋଟିଏ ବଡ଼ିଆ ସ୍ୱପ୍ନ ଦେଖିଲେ । ତାଙ୍କୁ ସ୍ୱପ୍ନରେ ଜଣେ କହିଲେ—"କାଇରୋ ଗଲେ ତୋ ଭାଗ୍ୟ ଖୋଲିବ। ସେଠାକୁ ଯାଇ ତୋ ଭାଗ୍ୟ ଅନୁସନ୍ଧାନ କର ।"

ଏ ସ୍ୱପ୍ନ ଦେଖି ଆବୁଙ୍କର ନିଦ ଭାଙ୍ଗିଗଲା । କାଇରୋ ବାଗ୍‌ବାଦଠାରୁ ବହୁ ଦୂର । ସେତେବେଳକୁ ଆହୁରି ରାତି ପାହି ନଥାଏ । ଆବୁ ଆଉ ଡେରି ନକରି ସଙ୍ଗେ ସଙ୍ଗେ କାଇରୋ ଯିବା ପାଇଁ ବାହାରି ପଡ଼ିଲେ ।



ବନ ସାରା ବୁଲି ବୁଲି ଆବୁ ଥକି ପଡ଼ିଥାନ୍ତି । ସନ୍ଧ୍ୟାବେଳକୁ ସେ ଗୋଟିଏ ଗାଁରେ ଯାଇ ପହଞ୍ଚିଲେ । ସେ ଏତେ ଥକି ପଡ଼ିଥାନ୍ତି ଯେ ପ୍ରଥମ ଘରଟିରେ ପହଞ୍ଚି କିଛି ଖାଦ୍ୟ ଓ ଆଶ୍ରୟ ମାଗିଲେ । ଯାହାହେଉ ଘର ମାଲିକ ତାଙ୍କୁ ଖାଇବାକୁ ଦେଲେ ଏବଂ ଘରେ ରାତିକପାଇଁ ଆଶ୍ରୟ ଦେଲେ । ତାପରେ କାଇରୋ ଯିବାର କାରଣ ପଚାରିଲେ । ଆବୁଠାରୁ ଯେତେବେଳେ ଶୁଣିଲେ ଯେ ସ୍ୱପ୍ନ କଥାରେ ବିଶ୍ୱାସ କରି ସେ କାଇରୋ ଯାଉଛନ୍ତି, ମାଲିକ ହସି ଉଠିଲେ । କହିଲେ—"ତମେ ଯେ ବୁଦ୍ଧିମାନ ପରି କାର୍ଯ୍ୟ କରିନାହଁ, ଏହା ନିଶ୍ଚିତ । ମୁଁ ତ ବର୍ଷକ ମଧ୍ୟରେ ଗୋଟିଏ ସ୍ୱପ୍ନ ତିନଥର ଦେଖିଲିଣି । ସ୍ୱପ୍ନଟି ହେଲା - ସହରର ପଶ୍ଚିମ ଦିଗରେ ଗୋଟିଏ ଶ୍ରେଷ୍ଠ ଉଦ୍ୟାନ । ଉଦ୍ୟାନ ଭିତରେ ୫ଟି ପାମ୍ ଗଛ ଅଛି । ସ୍ୱପ୍ନରେ ଲୋକଟିଏ ମୋତେ ସେହିଆଡ଼କୁ ହାତ ଦେଖାଇ କହୁଛି, ଯଦି ମୁଁ ସେଠାରେ ସନ୍ଧାନ କରେ ତେବେ ପ୍ରଚୁର ଧନ ପାଇବି । କିନ୍ତୁ ମୁଁ କେବେ ବି ଏପରି ମୂର୍ଖାମି କରୁନାହିଁ, ଯଦି ଓ ମୋର ବଡ଼ ପରିବାର ଓ ମୁଁ କଷ୍ଟରେ ଚଳୁଛି ।"

ଏକଥା ଶୁଣି ଆବୁ ଭାବିଲା ଫେରିଯିବ । କିନ୍ତୁ ତା' ଭିତରୁ କିଏ ଯେପରି କହିଲା, ସ୍ୱପ୍ନ ସତ ହେଉ କି ମିଛ, ତୁ ଯଦି କାଇରୋ ଯାଇଁ ନଯାଉ ତେବେ ଜଣାଯିବ ଯେ ତୋର ଧୈର୍ଯ୍ୟନାହିଁ ।

ପରଦିନ ଆବୁ ପୁଣି ଚାଲିଲେ । ରାସ୍ତାର ଗଛରୁ କିଛି ଫଳ ତୋଳି ଖାଇ ଆଗକୁ ଚାଲିଥାନ୍ତି । ଅଧରାତି ଆସି ହେଲା, କିନ୍ତୁ ଗୋଟିଏ ବି ଗାଁ ରାସ୍ତାରେ ପଡ଼ିଲା ନାହିଁ । ଶେଷରେ ଗୋଟିଏ ଭଙ୍ଗାଘର ଦେଖି ଆବୁ ସେଠାରେ ଶୋଇ ପଡ଼ିଲେ ।

ସେ ଘରଟି ପ୍ରକୃତରେ ଦଳେ ଡ଼ାକୁଙ୍କର ଆଡ୍‌ଡ଼ାସ୍ଥଳୀ । ସେମାନେ ଆସି ଦେଖିଲେ ଜଣେ କିଏ ଶୋଇଛି । ଭାବିଲେ, ବୋଧହୁଏ ଗୁପ୍ତଚର । ତେଣୁ ତାକୁ ବାନ୍ଧେଇ କରି ଉଠେଇଲେ । ଡ଼ାକୁଙ୍କୁ ଦେଖି ଆବୁ ଛାନିଆଁ । ଆବୁ ବହୁତ କଷ୍ଟରେ ସର୍ଦ୍ଦାରକୁ ବୁଝାଇଲେ ଯେ ସେ ଗୁପ୍ତଚର ନୁହନ୍ତି । ଜଣେ ଗରିବ ପଥିକ ମାତ୍ର । କାଇରୋ ଯାଉଛନ୍ତି ।

ଡାକୁ ସର୍ଦ୍ଦାର ତାଙ୍କୁ କାଇରୋ ଯିବା କାରଣ ପଚାରିଲା । ଆବୁ ତାକୁ ସବୁକଥା କହିଗଲେ । ଏକଥା ଶୁଣି ସର୍ଦ୍ଦାର କହିଲା—"ତୁ ଗୋଟାଏ ବୁଦ୍ଧୁ । ହଇରେ, ମୁଁ ଗୋଟେ ସ୍ୱପ୍ନ ପାଞ୍ଚଥର ଦେଖିଲିଣି । ଗୋଟିଏ ସହରର ପଶ୍ଚିମ ସୀମାନ୍ତରେ ଗୋଟିଏ ଛୋଟ ବଗିଚା । ସେଥିରେ ପାଞ୍ଚଟି ପାମ୍ ଗଛ ଅଛି । ତା ମଝିରେ ଶୁଖିଲା କୂଅଟିଏ । ଖୋଳିଲେ ତା ମଧ୍ୟରୁ ପ୍ରଚୁର ଧନ ବାହାରିବ । କିନ୍ତୁ ପାଞ୍ଚଥର ଏ ସ୍ୱପ୍ନ ଦେଖି ମଧ୍ୟ ମୁଁ ଯାଉନାହିଁ । ଅଥଚ ତୁ ଗୋଟେ ସ୍ୱପ୍ନ ଦେଖିଲୁ ଯେ ଏତେ ବାଟ ଯିବୁ ?" ଏହା କହି ହୋ ହୋ ହୋଇ ହସି ଉଠିଲା ସର୍ଦ୍ଦାର !

ଦ୍ୱିତୀୟ ଥର ପାଇଁ ଆବୁ ଫେରିଯିବା କଥା ଚିନ୍ତା କଲେ । କିନ୍ତୁ ପୁଣି ଭାବିଲେ ନା, ଧୈର୍ଯ୍ୟ ହରାଇବା ଉଚିତ ନୁହେଁ ।

ଆବୁ ଚାଲିବାକୁ ଆରମ୍ଭ କଲେ କାଇରୋ ଅଭିମୁଖେ । କିଛିଦିନ ପରେ ଆବୁ ଯାଇ ପହଞ୍ଚିଲେ କାଇରୋରେ ।

ଭୋକରେ ଆତୁର ହୋଇ ଆବୁ ଗୋଟିଏ ମସଜିଦ୍ ସାମନାରେ ବସିଥାନ୍ତି । ମସଜିଦ୍‌ରୁ ବାହାରୁଥିବା କିଛି ଲୋକ ଦୟା ପରବଶ ହୋଇ

ତାଙ୍କୁ କିଛି ଖାଇବାକୁ ଦେଲେ । ଆବୁ ଖାଇ ସାରି ସେଇ ମସଜିଦ୍‌ର ଅଗଣାରେ ଶୋଇ ପଡ଼ିଲେ ।



ସେଦିନ ରାତିରେ ଦଳେ ଚୋର ମସଜିଦ୍ କଡ଼ରେ ଥିବା ଜଣେ ଧନୀ ବ୍ୟକ୍ତିଙ୍କ ଘରେ ଚୋରିକରିବା ଉଦ୍ଦେଶ୍ୟରେ ପଶିଲେ । କିନ୍ତୁ ସିପାହୀମାନେ ଆସିବାରୁ ସେମାନେ ମସଜିଦ୍ ଭିତରେ ପଶିଗଲେ । ସିପାହୀମାନେ ଚାରିଆଡ଼ୁ ମସଜିଦ୍‌କୁ ଘେରିଗଲେ । ଚୋରମାନେ ଧରା-ପଡ଼ିଲେ । ତାଙ୍କ ସାଙ୍ଗରେ ଆବୁ ମଧ୍ୟ । ଲଜ୍ଜିତ ଓ ଅପମାନିତ ଆବୁକୁ ନିଆଗଲା ସିପାହୀ ମୁଖ୍ୟଙ୍କ ପାଖକୁ ।

ସିପାହୀ ମୁଖ୍ୟଙ୍କୁ ପ୍ରଣାମ କରି ସବୁକଥା କହିଲା ଆବୁ । ନିଜର ପୂର୍ବର ପ୍ରାଚୁର୍ଯ୍ୟ ଭରା ଜୀବନ, ତାର ପତନ ଓ ଶେଷରେ ସ୍ୱପ୍ନ ଦେଖି କାଇରୋ ଆସିବା ସବୁକଥା ଗୋଟି ଗୋଟି କରି କହିଗଲା । ତାର ସ୍ୱପ୍ନ ବୃତ୍ତାନ୍ତ ଶୁଣି ସିପାହୀ ମୁଖ୍ୟ ହସି ଉଠିଲେ । କହିଲେ ତମପରି ମୋଟିଏ ବୃଦ୍ଧୁ ମୁଁ କେଉଁଠି ଦେଖି ନାହିଁ । ମୁଁ ଗୋଟିଏ ସ୍ୱପ୍ନ ୭ଥର ଦେଖିଲିଣି । ମୁଁ ସ୍ୱପ୍ନରେ ଦେଖୁଛି ଯେ ଜଣେ ବ୍ୟକ୍ତି ମତେ କହୁଛନ୍ତି ଯେ ଗୋଟିଏ ସହରର ପଶ୍ଚିମ ସୀମାନ୍ତରେ ଗ୍ରେଟ ବଗିଚାଟିଏ ଅଛି । ଉକ୍ତ ବଗିଚାରେ ୫ଟି ପାମ୍ ଗଛ ଅଛି ଓ ତା ମଝିରେ ଗୋଟିଏ ଶୁଖିଲା କୂଅ ଅଛି । କୂଅ ଭିତରକୁ ୭ଟି ପାହାଚ ଲମ୍ବି ଯାଇଛି । ମୁଁ ଯଦି ସେ କୂଅ ମୂଳକୁ ଖୋଳେ ତେବେ ମୁଁ ଧନୀ ହୋଇଯିବି । କିନ୍ତୁ ମୁଁ ନ ଏକଥାରେ ବିଶ୍ୱାସ କରୁନାହିଁ । କିନ୍ତୁ ତମେ ଥରଟିଏ ସ୍ୱପ୍ନ ଦେଖି ଏତେ ବାଟ ଆସିଛ ?"

ଯାହା ହେଉ ଏପରି କହି ତାକୁ ଖାଇବା ପାଇଁ କିଛି ପଇସା ଦେଲେ ଓ ତାକୁ ଛାଡ଼ିଦେଲେ ।

ସିପାହୀ ମୁଖ୍ୟଙ୍କ କଥା ଶୁଣି ଆବୁ ଆଶ୍ଚର୍ଯ୍ୟ ହୋଇଯାଇଥିଲା । କାରଣ ସେ ଯେଉଁ ଜାଗା କଥା କହୁଥିଲେ । ତାହା ଆବୁଙ୍କର ଗ୍ରେଟ ଜାଗାଟି । ସେଇ ଜାଗାଟି ବାଗଦାଦର ପଶ୍ଚିମ ସୀମାରେ । ସେଠାରେ ୫ଟି ପାମ୍ ଗଛ ମଝିରେ ଶୁଖିଲା କୂଅଟି ଅଛି । ତେବେ ଏକଥା ତାର ମନେ ନ ଥିଲା । କିନ୍ତୁ ୭ଟି ପାହାଚ କଥା ଶୁଣି ତାର ସବୁ ମନେ ପଡ଼ି ଯାଇଥିଲା ।

ସେଠାରୁ ଫେରି ଆସିଲେ ଆବୁ ବାଗଦାଦ । କୂଅମୂଳ ଖୋଳି ପ୍ରଚୁର ସ୍ୱର୍ଣ୍ଣମୁଦ୍ରା ପାଇଲେ । ପୁଣି ନିଜର ବ୍ୟବସାୟ ଆରମ୍ଭ କଲେ ଓ ଖୁସିରେ ରହିଲେ ।

ନିଜର ଧୈର୍ଯ୍ୟ ଯୋଗୁଁ ସେ ତାଙ୍କର ଅବସ୍ଥା ସୁଧାରି ପାରିଥିଲେ । ଏଣୁ କୌଣସି କ୍ଷେତ୍ରରେ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ ।



# ପ୍ରକୃତ ଧର୍ମ

ବହୁଦିନ ତଳର କଥା । ସେତେବେଳେ ବେବିଲୋନର ସୁଲତାନ ଥାଆନ୍ତି ସାଲ୍ଦିନ । ମହାପରାକ୍ରମୀ ସୁଲତାନ ସିଏ । ସେଥିପାଇଁ ସେ ବହୁ ଧନ ଖର୍ଚ୍ଚ କରୁଥିଲେ ଯୁଦ୍ଧ ପାଇଁ । ଏପରି ହେଉ ହେଉ ଦିନେ ତାଙ୍କର ଏକ ଜରୁରି ଆବଶ୍ୟକ ପଡ଼ିଲା ଧନର । ସେତେବେଳକୁ ତାଙ୍କ ନିକଟରୁ ଧନ ସରିଆସିଥିଲା । ତେବେ କରିବେ କଣ ? ଏତେ ଧନ ବା ଆଣିବେ କେଉଁଠୁ ସଙ୍ଗେ ସଙ୍ଗେ ? ଚିନ୍ତାରେ ପଡ଼ିଗଲେ ସାଲ୍ଦିନ ।

ତାଙ୍କ ରାଜ୍ୟର ସବୁଠୁ ଧନଶାଳୀ ବ୍ୟକ୍ତି ଥିଲେ ଜଣେ ଜିଉ ଧର୍ମାବଲମ୍ବୀ ବୃଦ୍ଧ ବ୍ୟକ୍ତି । ସାଲ୍ଦିନ ତାଙ୍କଠାରୁ କିଛିଧନ ଆଣିବେ



ବୋଲି ଚିନ୍ତାକଲେ । କିନ୍ତୁ ତାଙ୍କୁ ମନ୍ତ୍ରୀମାନେ ପରାମର୍ଶ ଦେଲେ ଯେ ସେ ଧନ ନ ଦେବାର ସମ୍ଭାବନା ରହିଛି । ତେଣୁ କୌଣସି ଆଳ ଦେଖାଇ ତାଠାରୁ ଜୋର୍ କରି ଧନ ଅଣାଯାଉ ।

ଉକ୍ତ ଗାଉଁ ବୃଦ୍ଧ ବ୍ୟକ୍ତି ଜଣଙ୍କ ଅନ୍ତମାନାରେ ନିଜ ଧର୍ମ ବିଶ୍ୱାସୀ । ତେଣୁ ସୁଲତାନ ଭାବିଲେ ଯଦି ଗାଉଁ ବୃଦ୍ଧ ବ୍ୟକ୍ତି ଜଣକ ଅନ୍ୟ ଧର୍ମ ବିରୁଦ୍ଧରେ କହନ୍ତେ, ତେବେ ତାଙ୍କଠାରୁ ଧନ ଛଡ଼ାଇ ଆଣିବାର ମଉକା ସୁଲତାନଙ୍କୁ ମିଳିଯାନ୍ତା ।

ସୁଲତାନ ରାଜସଭାକୁ ଡକାଇଲେ ଗାଉଁ ବୃଦ୍ଧ ବ୍ୟକ୍ତିଙ୍କୁ । କହିଲେ "ମୁଁ ଶୁଣିଛି ଆପଣ ଜଣେ ଜ୍ଞାନୀ ବ୍ୟକ୍ତି । ବହୁ ଲୋକଙ୍କୁ ଆପଣ ଠିକ୍ ପଥ ଦେଖାଇଛନ୍ତି । ମୋର ମଧ୍ୟ ଗୋଟିଏ ପ୍ରଶ୍ନ ଅଛି । ଦୟାକରି ତାର ଉତ୍ତର ଦିଅନ୍ତୁ । ମୋର ପ୍ରଶ୍ନଟି ହେଲା ଜୁଇ ଧର୍ମ ମୁସ୍‌ଲିମ୍ ଧର୍ମ ଓ ଖ୍ରୀଷ୍ଟଧର୍ମ ଏ ତିନି ଧର୍ମ ମଧ୍ୟରୁ କେଉଁ ଧର୍ମଟି ଶ୍ରେଷ୍ଠ ?"

ବୃଦ୍ଧ ବ୍ୟକ୍ତି ଜଣକ କିଛି କ୍ଷଣ ଚୁପ୍ ରହି ଚିନ୍ତା କଲେ । ତାପରେ କହିଲେ, ହେ ସୁଲତାନ୍, ଆପଣଙ୍କ ପ୍ରଶ୍ନ ଶୁଣି ମୋର ଗୋଟିଏ ପୁରୁଣା ଗପ ମନେ ପଡ଼ୁଛି । ଗପଟି କହୁଛି ଶୁଣନ୍ତୁ ।

ବହୁଦିନ ତଳର କଥା । ଜଣେ ଧନବାନ ବ୍ୟକ୍ତି ଥିଲେ । ତାଙ୍କ ନିକଟରେ ଥିଲା ଦୁର୍ଲଭ ଧାତୁରେ ତିଆରି ଗୋଟିଏ ଅତି ସୁନ୍ଦର ମୁଦି । ସେ ଧନୀ ବ୍ୟକ୍ତିଙ୍କ ସର୍ତ୍ତ ଥିଲା ସେ ଯେଉଁ ପୁଅକୁ ମୁଦିଟି ଦେବେ, ସେ ପୁଅ ତାଙ୍କ ମୃତ୍ୟୁ ପରେ ତାଙ୍କ ଉତ୍ତରାଧିକାରୀ ହେବ । ମରିବା ପୂର୍ବରୁ ମୁଦିଟି ଯେଉଁ ପୁଅକୁ ସବୁଠି ବେଶୀ ଭଲ ପାଉଥିଲେ, ତାକୁ ମୁଦିଟି ଦେଲେ । ସେ ଉତ୍ତରାଧିକାରୀ ହେଲା ।

ପୁରୁଷାନୁକ୍ରମେ ଏହିପରି ଚାଲିଲା । ଯେଉଁ ପୁଅ ମୁଦି ପାଇଲା, ସେ ଉତ୍ତରାଧିକାରୀ ହେଲା । ତିନିପୁରୁଷ ଯିବା ପରେ ଯେଉଁ ଧନୀ ବ୍ୟକ୍ତି ଉତ୍ତରାଧିକାରୀ ହେଲେ, ତାଙ୍କର ତିନିପୁଅ ଥିଲେ । ତିନିପୁଅଙ୍କୁ ସେ ବ୍ୟକ୍ତି ସମାନଭାବରେ ଭଲ ପାଉଥିଲେ । ସେ ପ୍ରତ୍ୟେକ ପୁଅକୁ କଥା ଦେଇଥାନ୍ତି ମୁଦି ଦେବା ପାଇଁ ।

ଅନେକ ଦିନ ଗଲା । ସେ ବୁଢ଼ା ହୋଇଗଲେ । ତାପରେ ଚିନ୍ତା କଲେ କଣ କରିବେ । ତିନିପୁଅଙ୍କୁ ଗୋଟିଏ ମୁଦି କିପରି ଦେବେ ?

ତେଣୁ ସେ ଜଣେ ବଣିଆକୁ ଡାକି ମୁଦିଟି ଦେଲେ ଏବଂ ଏକା ପ୍ରକାରର ଆଉ ଦୁଇଟି ମୁଦି କରିବାକୁ କହିଲେ ।

ଅଳ୍ପଦିନ ମଧ୍ୟରେ ବଣିଆ ମୁଦି ୩ଟି ଆଣି ଦେଲା । ଅନ୍ୟ ମୁଦି ଦୁଇଟି ମଧ୍ୟ ଏତେ ସୁନ୍ଦର ଭାବରେ ନକଲ କରାଯାଇଥିଲା ଯେ ଧର୍ମ ବ୍ୟକ୍ତି ଜଣକ ନିଜେ ମଧ୍ୟ ଜାଣିପାରିଲେନି କେଉଁଟା ପ୍ରକୃତ ମୁଦି ।



ସେ ତିନିପୁଅଙ୍କୁ ଅଲଗା ଅଲଗା ଡାକି ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ମୁଦି ଦେଇଦେଲେ । ତାର କିଛିଦିନ ପରେ ତାଙ୍କର ମୃତ୍ୟୁ ହେଲା ।

ତାଙ୍କର ମୃତ୍ୟୁପରେ ତିନିପୁଅଙ୍କ ଭିତରେ କଳି ଲାଗିଲା ପ୍ରକୃତ ଉତ୍ତରାଧିକାରୀ କିଏ ବୋଲି । ତିନିହେଁ ନିଜ ନିଜକୁ କହିଲେ ପ୍ରକୃତ ଉତ୍ତରାଧିକାରୀ । କେହି ଏହାର ସମାଧାନ କରିପାରିଲେ ନାହିଁ । ଏପରିକି ନ୍ୟାୟାଳୟ ମଧ୍ୟ ଏହାର ସମାଧାନ କରିପାରିଲା ନାହିଁ । ତେଣୁ ହେ ସୁଲତାନ ! ଭଗବାନ ତିନି ସମ୍ପ୍ରଦାୟର ଲୋକଙ୍କୁ ତିନି ପ୍ରକାର ନିୟମ ଆଚରଣ ପ୍ରଦାନ କରିଛନ୍ତି । ତେଣୁ ତିନିହେଁ କହୁଛନ୍ତି ସେମାନଙ୍କ ଧର୍ମ ପ୍ରକୃତ ଧର୍ମ । କିନ୍ତୁ ପ୍ରକୃତରେ ଭଗବାନ ତିନିହେଁଙ୍କୁ ସମାନ ଭାବରେ ଭଲପାଆନ୍ତି । ଭଗବାନଙ୍କ ଦୃଷ୍ଟିରେ ତିନି ଧର୍ମ ସମାନ ।”

ସୁଲତାନ ଏ ଗପଟି ଶୁଣି ଭାରି ଖୁସି ହୋଇଗଲେ । ତାପରେ ସେ ବୃଦ୍ଧ ଜାଉ ଭଦ୍ରବ୍ୟକ୍ତିଙ୍କୁ ସବୁ କଥା ସତ ସତ କହିଗଲେ । ବୃଦ୍ଧ ଜାଉ ଜଣଙ୍କୁ ମଧ୍ୟ ଦରକାର ମୁତାବକ ଧନ ସାହାଯ୍ୟ କଲେ । ସୁଲତାନ ଓ ଜାଉଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ଗଢ଼ି ଉଠିଲା ।



# ବୁଦ୍ଧି ହିଁ ବଳ

ବହୁଦିନ ତଳର କଥା । ଗରିବ ବିଧବା ବୁଢ଼ୀଟିଏ ରହୁଥାଏ ଗୋଟିଏ ଛୋଟ ଗାଁର ଶେଷ ମୁଣ୍ଡରେ । ନିଜର ବୋଲି କେବଳ ତାର ଦୁଇଟି ଜିନିଷ । ବୁଢ଼ୀ ତାର କୁଡ଼ିଆର ଚାରିପଟେ ଶକ୍ତ ବାଡ଼ ବସେଇ ଦେଇଥାଏ ଏବଂ ପାଳିଥାଏ କେତେକ କୁକୁଡ଼ା ଓ ଗୋଟିଏ ଗଂଜା । ସେମାନେ ଦିନସାରା ମନ ମଉଜରେ ବାଡ଼ର ଭିତର ପଟେ କୁଡ଼ିଆ ପାଖରେ ବୁଲନ୍ତି । ରାତିରେ ବୁଢ଼ୀ ସେମାନଙ୍କୁ ଗୋଟିଏ ଛୋଟ ଘରେ ବନ୍ଦ କରି ରଖେ ।

ବୁଢ଼ୀର ଗଂଜାଟି ଗାଁର ସବୁଠୁ ଭଲ ଗଂଜା ବୋଲି ସମସ୍ତେ ଜାଣିଥିଲେ । ସେ ଦେଖିବାକୁ ଭାରି ସୁନ୍ଦର ଏବଂ ବୁଦ୍ଧିମାନ ମଧ୍ୟ ଥିଲା । ବୁଢ଼ୀର କୁକୁଡ଼ାଟି ମଧ୍ୟ ଦେଖିବାକୁ ଭାରି ସୁନ୍ଦର । କିନ୍ତୁ ସୁନ୍ଦର ହେଲେ କଣ ହେବ ତା'ର ବୁଦ୍ଧି ବୋଲି ଟିକିଏ ନଥିଲା ।

ଗୋଟିଏ ସକାଳର କଥା । ଗଂଜା ତାର ନିଦରୁ ଉଠିଲା । ରାଗରେ ସେ ଥର ଥର ହେଉଥାଏ । କୁକୁଡ଼ା ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ପଚାରିଲା "ହଇହେ ତମେ ନିଦରୁ ଉଠୁ ଉଠୁ ଏମିତି ରାଗୁଚ କାହିଁକି ?

ଗଂଜା କହିଲା "ମୁଁ ଗୋଟିଏ ଖରାପ ସ୍ୱପ୍ନ ଦେଖିଲି । ସ୍ୱପ୍ନରେ ଦେଖିଲି ଯେ ଗୋଟିଏ କୁକୁର ପରି ଜୀବ ମୋ ଉପରକୁ କୁଦି ପଡ଼ୁଛି ମୋତେ ମାରିବା ପାଇଁ ।"

ତାପରେ ଦୁହିଁଙ୍କ ଭିତରେ ବହୁତ ଯୁକ୍ତି ତର୍କ ଚାଲିଲା । ଗଂଜା କହିଲା, ସ୍ୱପ୍ନ ଘଟିବାକୁ ଥିବା ଘଟଣା ବିଷୟରେ ସଙ୍କେତ ଦିଏ । କିନ୍ତୁ କୁକୁଡ଼ା ମାନିବାକୁ ନାରାଜ । ତାର କହିବା କଥା ପେଟ ଗୋଳମାଳ ଯୋଗୁଁ ଖରାପ ସ୍ୱପ୍ନ ଦେଖାଯାଏ । ତେଣୁ ସେ ଗଂଜାକୁ କେତେକ ବିଶେଷ ପୋକଜୋକ ଖାଇବାକୁ ଉପଦେଶ ଦେଲେ ।

ବୁଢ଼ୀର ଘରଠୁ କିଛି ଦୂରରେ ଥିବା ଗୋଟିଏ ଘ୍ଲୋଟ ଜଙ୍ଗଲ । ଯେଉଁଠାରେ ବାସ କରୁଥିଲା ଶିଆଳଟିଏ । ଶିଆଳଟି ଅନେକ ଦିନରୁ ଗଂଜାଟି ଉପରେ ନଜର ରଖିଥାଏ । ସୁଯୋଗ ଉଣ୍ଡୁଥାଏ କିପରି ଏ ସୁନ୍ଦର ଗଂଜାଟିକୁ ଖାଇବ ।

ଦିନେ ସେ ବୁଢ଼ୀର କୁଡ଼ିଆ ପାଖକୁ ଆସିଲା । ଗୋଟିଏ ବୁଦା ଉଢ଼ାଳରେ ଛପି ରହିଲା । ଭାବିଲା ଗଂଜା ଆସିଲେ ସଙ୍ଗେ ସଙ୍ଗେ ମାଡ଼ି ବସିବ ।

ସେଦିନ ପାଗ ନିର୍ମଳ ଥାଏ । ଶ୍ରୀଯୁକ୍ତ ଗଂଜା ମହାଆନନ୍ଦରେ ଏପଟ ସେପଟ ଉଡ଼ି ଡେଉଁ ଦିନଟିକୁ ଉପଭୋଗ କରୁଥାନ୍ତି । ବାରଟା ବେଳକୁ ଗୋଟିଏ ଘ୍ଲୋଟ ପ୍ରଜାପତିକୁ ଖାଇବା ପାଇଁ ଗୋଡ଼ାଇ ଗୋଡ଼ାଇ ଗଂଜା ଯାଇ ପହଞ୍ଚିଲେ ସେଇ ବୁଦା ପାଖରେ । ହଠାତ୍ ସେ ଶିଆଳକୁ ଦେଖିପାରିଲେ ଏବଂ ଉଡ଼ିପିବାକୁ ଉପକ୍ରମ କଲେ । ଠିକ୍ ଏହି ସମୟରେ ଶିଆଳ ତାର ସ୍ୱରକୁ ନରମ କରି ଅତି ଭଦ୍ରଭାବରେ କହିଲା । "ଆଗୋ ଶ୍ରୀଯୁକ୍ତ ଗଂଜା ମହାଶୟ, ଆପଣ କଣ ଡରୁଛନ୍ତି କି ? ତେବେ ମତେ ଡରୁନଥିବେ ବୋଲି ମୋର ବିଶ୍ୱାସ । କାରଣ ମୁଁ ଆପଣଙ୍କ ସ୍ୱର୍ଗତ ପିତାଙ୍କ ସର୍ବଶ୍ରେଷ୍ଠ ବନ୍ଧୁ ଥିଲି । ସତ କଥା କହୁଛି ଶୁଣ । ମୋର ଏଠାକୁ ଆସିବାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ତୁମର ମଧୁର କଣ୍ଠର ଗୀତ ଶୁଣିବା । ମୋର ଦୃଢ଼ ବିଶ୍ୱାସ ସ୍ୱର୍ଗର ପକ୍ଷୀମାନେ ମଧ୍ୟ ତୁମ ପରି ସୁନ୍ଦର ଗୀତ ଗାଇ ପାରିବେନି । ତୁମେ ଏହି କଳା ନିଶ୍ଚୟ ତୁମ ବାପାଙ୍କ ଠାରୁ ପାଇଛ । କାରଣ ତୁମ ବାପା ଥିଲେ ଜଣେ ବିଖ୍ୟାତ ସଙ୍ଗୀତଜ୍ଞ । ତୁମ ବାପାଙ୍କ କଥା ପଡ଼ିଲେ ମୋ ଆଖିରେ ଲୁହ ଆସିଯାଉଛି । ସେ ଏତେ ସୁନ୍ଦର ଗାଉଥିଲେ ଯେ ନିଜ ସ୍ୱରରେ ସେ ନିଜେ ଦୁନିଆକୁ ଭୁଲି ଯାଉଥିଲେ । ତେଣୁ ସେ ଗୀତ ଗାଇଲାବେଳେ ଆଖିବନ୍ଦ ରଖୁଥିଲେ । ମୁଁ ଭାବୁଛି ତୁମେ ମଧ୍ୟ ସେପରି ଗୀତ ଗାଉଥିବ ।"

ଗଂଜା ଶିଆଳର ମଧୁର ବଚନରେ ସବୁ ଭୁଲିଗଲା । ଆଖି ବନ୍ଦ କରି ବୋବାଇବାକୁ ଲାଗିଲା । ଗଂଜା ଯେମିତି ଆଖି ବନ୍ଦ କରିଛି,

ଶିଆଳ ଝପଟି ପଡ଼ିଲା ତା' ଉପରକୁ । ତାପରେ ତାର ବେକକୁ ଧରି ଜଙ୍ଗଲ ଆଡ଼କୁ ଦୌଡ଼ିଲା ।



ବୁଢ଼ୀର ଅନ୍ୟ କୁକୁଡ଼ାମାନେ ହଠାତ୍ ଏ ଘଟଣା ଦେଖି ଚକିତ ହୋଇଗଲେ । ସେମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । କିନ୍ତୁ ପର ମୁହୂର୍ତ୍ତରେ ସମସ୍ତେ ଏକ ସଙ୍ଗେ ବୋବେଇ ଉଠିଲେ । ବୁଢ଼ୀ ଓ ତାର ଝିଅମାନେ ଦୌଡ଼ି ଆସିଲେ କଣ ହେଲା ଜାଣିବା ପାଇଁ । ସେମାନେ ଯେତେବେଳେ ଦେଖିଲେ ତାଙ୍କର ଗଂଜାକୁ ଶିଆଳ ନେଇ ପଳେଇ ଯାଉଛି, ସେମାନେ ପାଟିକରି ତାପଛରେ ଗୋଡ଼ାଇଲେ । ହାତରେ ଯାହା ପାଇଲେ ତାକୁ ଶିଆଳ ଉପରକୁ ଫୋପାଡ଼ିଲେ । କିଛି ଗ୍ରାମବାସୀ ମଧ୍ୟ ସେମାନଙ୍କ ସଙ୍ଗେ ଯୋଗଦେଲେ । ଗାଁର କିଛି କୁକୁର ମଧ୍ୟ ଶିଆଳ ପଛରେ ଦୌଡ଼ିଲେ ।

ଏଣେ ଗଂଜାକୁ ନିଶ୍ୱାସ ନେବାରେ ବଡ଼ କଷ୍ଟ ହେଉଥାଏ । ବହୁ ଭାବିଚିନ୍ତି ବଡ଼ କଷ୍ଟରେ ଗଂଜା କହିଲା, "ହେ ଶିଆଳ ମହାଶୟ, ମୁଁ ଯଦି ଆପଣଙ୍କ ଜାଗାରେ ଥାଆନ୍ତି, ତେବେ ଏହି ଗ୍ରାମବାସୀଙ୍କୁ କହିଥାନ୍ତି, ବୁଦ୍ଧୁ ! ତମେ ସବୁ କିଏ ଶିଆଳ ମହାଶୟଙ୍କ ଆଚରଣରେ ପ୍ରତିବାଦ କରିବାକୁ ?"

"ବାଃ ! ତୁ ତ ବଢ଼ିଆ କଥାଟେ କହିଲୁ ଗଂଜା । ମୁଁ ଏ ବୁଢ଼ି ଗ୍ରାମବାସୀ ଓ ତାଙ୍କ କୁକୁରଗୁଡ଼ାଙ୍କୁ ଏ କଥା ନିଶ୍ଚୟ କହିବି ।"

ଶିଆଳ ପାଟି ଖୋଲିବାମାତ୍ରେ ଗଂଜା ଖସିଯାଇ ଉଡ଼ିଗଲା । ଯାଇ ବସିଲା, ଗୋଟିଏ ଗଛର ଉପର ଡ଼ାଳରେ ।

ଶିଆଳ ଗଛଆଡ଼କୁ ଚାହିଁଲା । ଦେଖିଲା ଗଛର ଉପର ଡାଳରେ ବସି ଗଂଜା ଯୋର ଯୋରରେ ନିଶ୍ୱାସ ନେଉଛି । ତହୁଁ ସେ କୋମଳ କଣ୍ଠରେ କହିଲା "ହେ ମୋର ପ୍ରିୟ ବନ୍ଧୁଙ୍କ ପୁତ୍ର ! ତମେ ମତେ ଭୁଲ ବୁଝିଲ କି ? ଏ ଲୋକ ଭିଡ଼ରୁ ଦୂରରେ ଶାନ୍ତ ପରିବେଶ ମଧ୍ୟରେ ମୁଁ ତୁମ ଗୀତ ଶୁଣିବାକୁ ଚାହୁଁଥିଲି । ତେଣୁ ମୁଁ ତୁମକୁ ନେଇଯାଉଥିଲି । ଅବଶ୍ୟ ଏପରି ନେବାରେ ତୁମକୁ ଟିକିଏ କଷ୍ଟ ହୋଇଥିବ । କିନ୍ତୁ ପ୍ରକୃତରେ ମୋର କୌଣସି ଖରାପ ଉଦ୍ଦେଶ୍ୟ ନଥିଲା ।"

ଗଂଜା ଜୋରରେ ନିଶ୍ୱାସ ନେଇ ନେଇ କହିଲା, "ହେ ଧୂର୍ତ୍ତ ଶିଆଳ ! ମୁଁ ଆଉ ତୋର କୋମଳ କଥାରେ ଭୁଲିବି ନାହିଁ । ଥରେ ତୋର କୋମଳ କଥାରେ ଭୁଲି ମୁଁ ବଡ଼ ଭୁଲ କରିଛି । ଯେତେବେଳେ ମୋର ଆଖି ସମ୍ପୂର୍ଣ୍ଣ ଖୋଲା ରଖିବା କଥା, ସେତେବେଳେ ମୁଁ ଆଖି ବନ୍ଦ କରିଦେଲି । ବାସ୍ତବିକ୍ ମୁଁ କେତେ ଭୁଲ୍ ନ କଲି ! କିନ୍ତୁ ଆଉ ନୁହେଁ ।"

ଶିଆଳ ଭାବିଲା "ମୁଁ କେଉଁ କମ୍ ଭୁଲ କଲି କି ? ମୁଁ ପାଟି ଏପରି ସମୟରେ ଖୋଲିଲି ଯେତେବେଳେ ମୋର ପାଟି ସମ୍ପୂର୍ଣ୍ଣ ବନ୍ଦ ରହିବା କଥା ।"

ଦୂରରୁ ଗାଁ ଲୋକଙ୍କ ପାଟି ଓ କୁକୁର ଭୁକା ଶୁଭିଲା । ଗଂଜା ଆଶା ଛାଡିଦେଇ ନିଜକୁ ଧିକାର କରି କରି ଶିଆଳ ଦୌଡ଼ିଲା ଜଙ୍ଗଲ ଆଡ଼କୁ ।



# ଠକାମିର ଫଳ

ଦୁଇ ଜଣ ସାଙ୍ଗ ଏକ ତୀର୍ଥଯାତ୍ରାରେ ମକ୍‌କା ସହରକୁ ବାହାରିଲେ । ସେମାନେ ସହରର ଲୋକ ହୋଇଥିବାରୁ କୌଣସି କଠିନ କାର୍ଯ୍ୟ କରିପାରୁନଥିଲେ । କିନ୍ତୁ କଣ କରିବେ, ଦୂର ବାଟକୁ ତ ଯାଉଛନ୍ତି । ତେଣୁ ବାଧ୍ୟ ହୋଇ ସାଙ୍ଗରେ କମ୍ବଳ, ପୋଷାକ ପତ୍ର ଏବଂ ବାସନ କୁସନ ଧରି ବହୁତ କଷ୍ଟରେ ଚାଲିଲେ ।

ଦିନେ ସେମାନେ ବାଟରେ ଥିବା ଗୋଟିଏ ଧର୍ମଶାଳାରେ ରହିଲେ । ସେଠାରେ ସେମାନେ ଏକ ଶାନ୍ତ ଶିଷ୍ଟ ଏବଂ ବଳିଷ୍ଠ ଯୁବକକୁ ଭେଟିଲେ । ସେ ମଧ୍ୟ ମକ୍‌କାକୁ ଯାଉଥିଲା ।

ଧର୍ମଶାଳାରେ ବିଶ୍ରାମ ନେଉଥିବାବେଳେ ସେମାନେ ନାନାପ୍ରକାର କଥା କହି ସେ ଯୁବକକୁ ସାଙ୍ଗ କରିବା ପାଇଁ ଚେଷ୍ଟା କଲେ । ଯୁବକଟି ମୂର୍ଖ ହୋଇଥିବା ହେତୁ ସେମାନଙ୍କ କଥା ଶୁଣି ତାଙ୍କ ସାଙ୍ଗରେ ଯିବାକୁ ରାଜି ହୋଇଗଲା । ସେମାନେ ଏକା ସାଙ୍ଗରେ ସବୁ ଖାଦ୍ୟ ପଦାର୍ଥ ନେବା ପାଇଁ ସ୍ଥିର କଲେ ।

ନୂଆ ସାଙ୍ଗଟି ଅନ୍ୟ ଦୁଇ ସାଙ୍ଗଙ୍କର ଜିନିଷ ବୋହିବା କଷ୍ଟ ଦେଖି ସେମାନଙ୍କର ଜିନିଷ ନିଜେ ବୋହିବାକୁ ଲାଗିଲା ଏବଂ ସେମାନଙ୍କୁ ଖୁସି କରିଦେଲା ।

ଦିନେ ସନ୍ଧ୍ୟାରେ ସହରର ଦୁଇ ସାଙ୍ଗ ଦେଖିଲେ ଯେ ଯେତିକି ଅଟା ଅଛି ସେଥିରେ ଗୋଟିଏ ମାତ୍ର ରୁଟି ହୋଇ ପାରିବ । ତେଣୁ ସେମାନେ ନିଜେ ପୁରାପେଟ ଖାଇବା ପାଇଁ ଏବଂ ମୂର୍ଖ ଯୁବକକୁ କିଛି ନ ଦେବା ପାଇଁ ଗୋଟିଏ କୌଶଳ କଲେ । ତେଣୁ ସେମାନେ ତାକୁ କହିଲେ "ଦେଖ ଯେତିକି ଅଟା ଅଛି ସେଥିରେ ଗୋଟିଏ ଲୋକ କେବଳ ପେଟପୁରା ଖାଇପାରିବ । ତେଣୁ ଆଗେ ରୁଟି ବସାଇ ଦେଇ ଶୋଇବାକୁ ଯିବା । ଯିଏ ସବୁଠାରୁ ବଢ଼ିଆ ସ୍ୱପ୍ନ ଦେଖିବ ସେ ଏକାକୀ ସବୁତକ ରୁଟି ଖାଇବ ।



ଯୁବକଟି ସଙ୍ଗେ ସଙ୍ଗେ ତାଙ୍କ କଥାରେ ରାଜି ହୋଇଗଲା । କିନ୍ତୁ ସେ ମନେ ମନେ ଭାବିଲା ଯେ ଏମାନେ ନିଶ୍ଚୟ କିଛି ବଦମାସୀ କରିବେ ବୋଲି ଚିନ୍ତା କରୁଛନ୍ତି । ତେଣୁ ସେ ଗୋଟିଏ ଉପାୟ ଚିନ୍ତା କଲା ।

ଯୁବକଟି ନିଦରେ ନ ଶୋଇ କେବଳ ଶୋଇବାର ଛଳନା କଲା । ଯେତେବେଳେ ଦେଖିଲା ଦୁଇସାଙ୍ଗ ନିଦରେ ଶୋଇ ପଡ଼ିଲେଣି, ସେ ଉଠି ଅଧାକଞ୍ଚା ରୁଟିଟିକୁ ଖାଇ ଦେଲା । ଏବଂ ତାପରେ ଯାଇ ନିଦରେ ଶୋଇ ପଡ଼ିଲା ।

କିଛି ସମୟ ପରେ ଦୁଇ ସାଙ୍ଗଙ୍କ ମଧ୍ୟରୁ ଜଣେ ଉଠି ପଡ଼ି କହିଲା, "ହେ ଭଗବାନ, କି ଅସମ୍ଭବ ସ୍ୱପ୍ନ ମୁଁ ଦେଖିଲି । ସ୍ୱପ୍ନରେ ଦେଖିଲି ଯେ ସ୍ୱର୍ଗର ଦୁଇ ଅପସରା ଆସି ମୋ ନିକଟରେ ପହଞ୍ଚିଲେ । ସେମାନେ ମୋତେ ସାଙ୍ଗରେ ନେଇ ସିଧା ଗଲେ ସ୍ୱର୍ଗକୁ । ସ୍ୱର୍ଗର ଦ୍ୱାର ପାଖରେ ପହଞ୍ଚି ଦେଖିଲି ସୁନାରେ ତିଆରି ହୋଇଛି ସ୍ୱର୍ଗର ଦ୍ୱାର । ସେଥିରେ ବିଭିନ୍ନ ରତ୍ନ ଖଂଜାଯାଇଛି । ମୋତେ ସ୍ୱାଗତ କରିବା ପାଇଁ ଶହ ଶହ ପରୀ ଧାଡ଼ି ବାନ୍ଧି ଠିଆ ହୋଇଛନ୍ତି । ସେମାନେ ମୋତେ ସ୍ୱର୍ଗ ଭୁବନକୁ ପାଛୋଟି ନେଲେ ।"

ଆଉ ସାଙ୍ଗଟି ମଧ୍ୟ ଉଠି ପଡ଼ି କହିଲା "ଆରେ ମୁଁ ମଧ୍ୟ ସେଇ ପ୍ରକାରର ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଛି । ମୁଁ ଦେଖିଲି ଦୁଇ ଯମଦୂତ ଆସି ମୋତେ ସାଙ୍ଗରେ ନେଇଗଲେ । ମୋତେ ନେଇ ସେମାନେ ପହଞ୍ଚିଲେ ନର୍କ ଦ୍ୱାରରେ । ନର୍କର ଦ୍ୱାର ଝଙ୍କାଳରେ ତିଆରି । ସେଠାରେ ମତେ ସ୍ୱାଗତ କରିବାକୁ ଠିଆ ହୋଇଥାନ୍ତି ଶହ ଶହ ଯମଦୂତ । ସେମାନେ ମୋତେ ସ୍ୱାଗତ କରି ଭିତରକୁ ନେଇଗଲେ । ଏତିକିରେ ମୋ ନିଦ ଭାଙ୍ଗିଗଲା ।"

ଏ ଦୁହିଁଙ୍କ ସ୍ୱପ୍ନ କଥା ସରିଲା । କିନ୍ତୁ ଯୁବକ ଉଠୁନଥାଏ । ତେଣୁ ସେମାନେ ତାକୁ ଉଠାଇଲେ । ଯୁବକ ଉଠି ଏମାନଙ୍କୁ ଦେଖି ସତେ ଯେପରି ଆଶ୍ଚର୍ଯ୍ୟ ହୋଇଗଲା । ପଚାରିଲା—"ଆରେ ଆପଣମାନେ କେତେବେଳେ ଫେରିଲେ ? ଦୁଇସାଙ୍ଗ ଆଶ୍ଚର୍ଯ୍ୟ ହୋଇଗଲେ, "ଫେରିଲୁ ମାନେ ?" ସେମାନେ ବିସ୍ମୟରେ ପଚାରିଲେ ।

ଯୁବକଟି ଉଠି ବସିଲା । କହିଲା, "ମୋତେ ଲାଗିଲା ଦୁଇ ଜଣ ଯମଦୂତ ଆସି ଆପଣମାନଙ୍କ ମଧ୍ୟରୁ ଜଣକୁ ସ୍ୱର୍ଗକୁ ଓ ଜଣକୁ ନର୍କକୁ ନେଇଗଲେ । ମୁଁ ଭାବିଲି ଆପଣ ମାନେ ତ ଏତେଦୂରରୁ ଶୀଘ୍ର ଫେରି ପାରିବେ ନାହିଁ । ଏଣୁ ମୁଁ ରୁଟିଟି ଖାଇଦେଲି ।"

ଦୁଇ ସାଙ୍ଗ ତା ମୁହଁକୁ ଚାହିଁ ରହିଲେ । ସେମାନେ ଭାବି ପାରିଲେନି କଣ କହିବେ ।

ଏହି ସମୟରେ ଯୁବକଟି କହିଲା "ମୁଁ ଠିକ୍ କରିସାରିଛି ଯେ ଆସନ୍ତା କାଲିଠାରୁ ମୁଁ ଏକୁଟିଆ ମକ୍କା ଯିବି । କାରଣ ବନ୍ଧୁତା ଖାତିରରେ ମୁଁ ଆପଣମାନଙ୍କ ବୋଝ ବୋହୁଛି । କିନ୍ତୁ ଆପଣମାନେ ନ ସ୍ୱର୍ଗ ଓ ନର୍କକୁ ଗଲାବେଳେ ମୋ କଥା ଟିକିଏ ବି ଚିନ୍ତାକଲେ ନାହିଁ । ଏପରି ବନ୍ଧୁତା ମୋର ଦରକାର ନାହିଁ ।"

ତର୍ଣ୍ଣି ଆର ଵନ ସଙ୍କାକ୍ରୁ ଧ୍ୱବକଠି ନଜ ଜନସ୍ତ ଅଲଗା କଣ ମକ୍କା ଥାଡ଼କୁ ଗୃଜଲ । ଦୁଇସାଙ୍ଗଙ୍କ ମୁହଁ ଲଲ ଫଡ଼ଗଲ । ସେମାନେ ଭାବଲେ ଆମେ କେତେ ସ୍ୱାର୍ଥପର ସତେ । ଆମ ପାଇଁ ସିଏ ଆମର ବୋଝ



ଉଠାଇଲ । ଅଥଚ ଆମେ ତାକୁ ରୁଟିରୁ ଭାଗେ ନ ଦେବାପାଇଁ ଠକାଇ କୁ ବସିଥିଲୁ । ଆ ଠକାମିର ଫଳ ସିଏ ଆମକୁ ଠିକ୍ ଦେଲ ।



# ଆଚରଣର ରହସ୍ୟ

ଜର୍ଜିଆ ନାମକ ଗୋଟିଏ ଶ୍ରେଷ୍ଠ ରାଜ୍ୟ ଥାଏ । ସେଠାର ରାଜା ଥରେ ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ ରାଜା ଦେଖିଲେ ଯେ ଘୋଟିଏ କଦାକାର ବିଲୁଆ ତାଙ୍କ ସୁନ୍ଦର ଉଆସରେ ଡିଆଁ ଡେଇଁ କରୁଛି । ବିଲୁଆଟି ଯେ କେବଳ ଦେଖିବାକୁ ଅସୁନ୍ଦର ଥିଲା ତାହା ନୁହଁ । ସେଇଟି ଦୁଷ୍ଟ ପ୍ରକୃତିର ବୋଲି ଜଣା ପଡ଼ୁଥିଲା । ସ୍ୱପ୍ନଟି ଦେଖି ରାଜା ଏତେ ବିରକ୍ତ ହୋଇଗଲେ ଯେ ତାଙ୍କ ନିଦ ଭାଙ୍ଗି ଗଲା ।

ରାଜା ତାଙ୍କର ସ୍ୱପ୍ନ ମନ୍ତ୍ରୀମାନଙ୍କୁ କହିଲେ । କିନ୍ତୁ କୌଣସି ମନ୍ତ୍ରୀ ସ୍ୱପ୍ନର ଯଥାଯଥ କାରଣ ଦର୍ଶାଇ ପାରିଲେ ନାହିଁ । ତାପରେ ରାଜା ସଭାସଦ୍‌ମାନଙ୍କୁ ସ୍ୱପ୍ନ ବିଷୟରେ କହିଲେ । କିନ୍ତୁ ସେମାନେ ମଧ୍ୟ ଏହାର ଉତ୍ତର ଦେଇପାରିଲେ ନାହିଁ ।

ରାଜା ତାଙ୍କ ରାଜ୍ୟ ସାରା ବିଜ୍ଞାପନ ଦ୍ୱାରା ସମସ୍ତଙ୍କୁ ସ୍ୱପ୍ନଟି ଜଣାଇଦେଲେ । ଏହା ମଧ୍ୟ ଘୋଷଣା କଲେ ଯେ ଯେକୌଣସି ବ୍ୟକ୍ତି ସ୍ୱପ୍ନଟିର ସଠିକ୍‌ମାନେ ବୁଝାଇଦେଇ ପାରିବ ତାକୁ ପ୍ରଚୁର ଅର୍ଥ ପୁରସ୍କାର ଦିଆଯିବ ।

ଅନେକ ଜ୍ଞାନୀ, ବିଦ୍ୱାନ, ଜ୍ୟୋତିଷ ଆସି ପହଞ୍ଚିଲେ ଏବଂ ନାନା ପ୍ରକାର ଅର୍ଥ କଲେ ସ୍ୱପ୍ନର । କିନ୍ତୁ କୌଣସିଟା ରାଜାଙ୍କ ମନକୁ ପାଉନଥାଏ ।

ସେ ରାଜ୍ୟରେ ଆଇଭାନ ନାମକ ଜଣେ ଯୁବକ ବାସ କରୁଥାଏ । ସେ ଗରିବ କିନ୍ତୁ ଉଚ୍ଚାଭିଳାଷୀ । ଅନ୍ୟ ଲୋକଙ୍କ ପାଖରେ ସେ ମଧ୍ୟ ଏ କଥା ଶୁଣିବାକୁ ପାଇଲା । କ୍ଷେତରୁ ଫେରୁଥିବାବେଳେ ଗୋଟିଏ ଗଛମୂଳେ ବସି କହିଲା, "ମୁଁ ଯଦି ସ୍ୱପ୍ନର ଅର୍ଥଟା ଜାଣିଥାନ୍ତି, ତେବେ କେତେ ମଜା ହୁଅନ୍ତା ସତେ । ମୁଁ ଜଣେ ଧନୀ ବ୍ୟକ୍ତି ହୋଇଯାଆନ୍ତି ଏହି ପୁରସ୍କାର ପାଇ । କିନ୍ତୁ ହାଏ । ମୁଁ ବୃଥାରେ ଏହି ଚିନ୍ତା କରୁଛି ସିନା !

ଏହି ସମୟରେ ଗୋଟିଏ କୋମଳ କଣ୍ଠରେ ଶୁଣାଗଲା—"ତମେ କଣ ରାଜାଙ୍କ ସ୍ୱପ୍ନର ଅର୍ଥ ଜାଣିବାକୁ ଚାହୁଁଚ ?

ଆଲାଦିନ୍ ଆଶ୍ଚର୍ଯ୍ୟ ହୋଇ ଚାରିଆଡ଼କୁ ? ଚାହିଁଲା ଦେଖିଲା, ସୁନ୍ଦର ରଙ୍ଗିନ୍ ଛୋଟିଆ ଚଢ଼େଇଟିଏ ଗଛର ଉପରେ ଡାଳରେ ବସିଛି ।



ଆଲାଦିନ ନିଜର କଣ୍ଠକୁ ଯଥାସମ୍ଭବ କୋମଳ କରି କହିଲା, ହେ ମୋର ପ୍ରିୟ ଟିକି ଚଢେଇ ! ତମେ ଯଦି ସ୍ୱପ୍ନର ଅର୍ଥ ଜାଣିଛ, ତାହେଲେ ମୋତେ କହୁନ କାହିଁକି ? ଚଢ଼େଇ ତାର କୁନି କୁନି ଡେଣା ହଲାଇ ତଳ ଡାଳକୁ ଖସି ଆସିଲା, କହିଲା ମୁଁ ତୁମକୁ ଅର୍ଥ କହିଦେଇପାରେ, କିନ୍ତୁ ଗୋଟେ ସର୍ତ୍ତରେ । ସର୍ତ୍ତଟି ହେଲା ତୁମେ ଯାହା ପୁରସ୍କାର ପାଇବ ତାହାର ଅଧା ମୋତେ ଦେବ । ଆଲାଦିନ୍ ସଙ୍ଗେ ସଙ୍ଗେ ଏହି ପ୍ରସ୍ତାବରେ ରାଜି ହୋଇଗଲା ।

ଚଢେଇଟି କହିଲା ବାଲୁଆଟି ଉଆସର ଡେଇଁବା ଅର୍ଥ ସାରା ରାଜ୍ୟରେ କପଟତା ବ୍ୟାପି ଯାଇଚି ଏବଂ ବିଦ୍ରୋହର ଧ୍ୱନି ଶୁଣାଯାଉଛି । ଉଆସ ରାଜ୍ୟକୁ ଏବଂ ବାଲୁଆ କପଟତାକୁ ବୁଝାଉଛି । ତେଣୁ ରାଜା

ତାଙ୍କର ପରିଷଦ ଏବଂ ପ୍ରଜାମାନଙ୍କ ସହିତ ବୁଦ୍ଧି ବିମର୍ଷ କଥାବାର୍ତ୍ତା କରିବା ଉଚିତ ।

ଆଇଭନ୍ ଠିକ ଚଢ଼େଇକୁ ଧନ୍ୟବାଦ ଜଣାଇ ରାଜଧାନୀ ଆଡ଼କୁ ଚାଲିଲା । ସେ ଉଆସରେ ପହଞ୍ଚିବା ଆଗରୁ ସନ୍ଧ୍ୟା ହୋଇ ଯାଇଥାଏ । ରାଜା ସେତେବେଳେ ଦର୍ଶକଙ୍କ କୋଠରୀରେ ବସି ଆସିଥିବା ଜ୍ୟୋତିଷ, ପଣ୍ଡିତ ଓ ଅନ୍ୟାନ୍ୟ ଜ୍ଞାନୀ ଲୋକଙ୍କଠାରୁ ସ୍ୱପ୍ନର ଅର୍ଥ ଶୁଣୁଥାନ୍ତି । କିନ୍ତୁ ତାଙ୍କ ମୁଖ ମଣ୍ଡଳ ଦେଖି ଆଇଭନ୍ ଜାଣି ପାରିଲା ଯେ ସେମାନଙ୍କ ଉତ୍ତରରେ ରାଜା ସନ୍ତୁଷ୍ଟ ନୁହନ୍ତି ।

ଆଇଭନ୍ ରାଜାଙ୍କୁ ପ୍ରଣାମ କରି ଏକାନ୍ତରେ ସ୍ୱପ୍ନର ଅର୍ଥ କହିବାକୁ ଅନୁମତି ମାଗିଲା । ରାଜାଙ୍କ ଆଦେଶରେ ସମସ୍ତେ ସେଠାରୁ ବାହାରକୁ ଚାଲି ଗଲେ । ଆଇଭନ୍ ଚଢ଼େଇଟିଠାରୁ ଶୁଣିଥିବା ଉତ୍ତର ଗୁଡ଼ିକ ରାଜାଙ୍କୁ କହିଲା । ରାଜା ଏହି ଉତ୍ତର ଶୁଣି ଭାରି ଖୁସି ହୋଇଗଲେ । ତାଙ୍କୁ ପ୍ରଚୁର ଧନ ସମ୍ପତ୍ତି ଦେଇ ରାଜକୀୟ ସମ୍ମାନର ସହିତ ରାଜା ତାଙ୍କୁ ବିଦାକଲେ ।

ଇଭାନ୍ ପ୍ରଚୁର ଧନ ପାଇ ବହୁତ ଖୁସି ହେଲା । କିନ୍ତୁ ପୁଣି ଯେତେବେଳେ ତାର ମନେ ପଡ଼ିଲା ଯେ, ସେ ସେହି ଧନର ଅଧା ଭାଗ ସେହି ଚଢ଼େଇକୁ ଦେବାକୁ ପଡ଼ିବ ସେତେବେଳେ ତାର ମନ ଶୁଖି ଗଲା । ତେଣୁ ସେ ଅନ୍ୟ ଏକ ରାସ୍ତା ଦେଇ ତାର ଗାଁକୁ ଫେରିଗଲା । ଯେଉଁ ରାସ୍ତାରେ କି ଚଢ଼େଇ ସହିତ ଦେଖା ହେବାର ସମ୍ଭାବନା ନ ଥିଲା ।

ଆଇଭନ ସେହି ଟଙ୍କାରେ ଗୋଟିଏ ସୁନ୍ଦର ଘର ତିଆରି କରି ବସିଗଲା ଏବଂ ଏକ ଧନୀ ଲୋକ ଭଳି ରହିବାକୁ ଲାଗିଲା ।

ଏହିପରି କେତେବର୍ଷ ବିତିଗଲା । ହଠାତ୍ ଦିନେ ରାଜାଙ୍କର ଏକ ଦୂତ ଆସି ଆଇଭନ ପାଖରେ ପହଞ୍ଚିଲେ ଏବଂ କହିଲା ଗତ ରାତିରେ ରାଜା ପୁଣି ଏକ ଅଦ୍ଭୁତ ସ୍ୱପ୍ନ ଦେଖିଛନ୍ତି । ତେଣୁ ତୁମକୁ ସଙ୍ଗେ ସଙ୍ଗେ ରାଜାଙ୍କ ପାଖକୁ ଯିବାକୁ ପଡ଼ିବ । ଆଇଭନ ତାହା ଶୁଣି ଦୂତକୁ କହିଲା ଯେ ସେ ଆସନ୍ତା କାଲି ସକାଳେ ନିଶ୍ଚୟ ଯାଇ ରାଜାଙ୍କ ସଙ୍ଗେ ଦେଖା କରିବ ।

ରାଜାଙ୍କର ସ୍ୱପ୍ନଟି ଏହିପରି ଥିଲା । ଗୋଟିଏ ତୀକ୍ଷଣ ଏବଂ ଚକ୍‌ଚକିଆ ତରବାରି ରାଜଉଆସର ଉପରେ ଘୂରି ବୁଲୁଚି; ବିଶେଷତଃ ରାଜଦରବାରର ଗୁମ୍ବଜ ଶୀର୍ଷପଟରେ ଉଡ଼ି ବୁଲୁଛି । ଇଶାନ ସାରା ରାତି ନଶୋଇ କେବଳ ସେହି ସ୍ୱପ୍ନ ବିଷୟରେ ହିଁ ଭାବିବାକୁ ଲାଗିଲା । କିନ୍ତୁ ସେ ସ୍ୱପ୍ନର କାରଣ ବିଷୟରେ କିଛି ଭାବିପାରି ନାହିଁ । ତେଣୁ କୌଣସି ଉପାୟ ନପାଇ ତାପରଦିନ ସକାଳୁ ରାଜଭବନକୁ ଯିବା ରାସ୍ତାରେ ପୁନର୍ବାର ସେହି ବୁଦ୍ଧିମନ୍ତ ଚଢ଼େଇଟି ସାଙ୍ଗରେ ଦେଖା ହେଲା । ଏବଂ ତାକୁ ରାଜାଙ୍କର ସ୍ୱପ୍ନ ବିଷୟରେ କହିଲା । ଚଢ଼େଇଟି ସବୁ ଶୁଣିଲା ଏବଂ ତାପରେ କହିଲା ଯେ ତୁମେ ଯଦି ପୁରସ୍କାର ପାଇବା ପରେ ମତେ ଅଧେ ଦେବ ବୋଲି କଥା ଦେବ ତାହାହେଲେ ମୁଁ ତୁମକୁ କାରଣଟି କହିବି । ଇଶାନ ତା କଥାରେ ରାଜି ହୋଇଗଲା । ଚଢ଼େଇଟି କହିଲା—ସ୍ୱପ୍ନର ମୂଳ ଅର୍ଥ ହେଉଛି ରାଜ୍ୟରେ ହିଂସା ବ୍ୟାପିବାକୁ ଆରମ୍ଭ କରୁଛି । ଖଣ୍ଡାଟି ହେଉଛି ହିଂସାର ଚିହ୍ନ । ରାଜ ଉଆସ, ଯାହାଉପରେ ଖଣ୍ଡାଟି ସାରା ରାଜ୍ୟକୁ ବୁଝାଉଛି ଏବଂ ରାଜଉଆସର ଗୁମ୍ବଜଟି ଯାହା ଶୀର୍ଷପଟରେକି ବିଶେଷତଃ ଭାବରେ ଖଣ୍ଡାଟିଏ ବୁଲୁଛି, "ରାଜାଙ୍କୁ" ବୁଝାଉଛି । ଏହାର ଅର୍ଥ ହେଉଛି ଯେ, ସାରା ରାଜ୍ୟ ଏବଂ ନିଜେ ରାଜା ଶତ୍ରୁମାନଙ୍କ ମଧ୍ୟରେ ଘେରି ହୋଇ ରହିଛନ୍ତି । ଶତ୍ରୁମାନେ ରାଜ୍ୟରେ ଧିରେ ଧିରେ ହିଂସାତ୍ମକ କାର୍ଯ୍ୟ ଆରମ୍ଭ କରୁଛନ୍ତି । ତେଣୁ ରାଜା ସବୁବେଳେ କଡ଼ା ପହରା ମଧ୍ୟରେ ରହିବା ଉଚିତ୍ ଏବଂ ସାରା ରାଜ୍ୟର ସୁରକ୍ଷା ବଳୟ ବଢ଼ାଇବ ଉଚିତ୍ ।

ଆଇଶାନ କିଛି ସମୟ ପରେ ରାଜାଙ୍କୁ ଭେଟିଲା ଏବଂ ଚଢ଼େଇ-ଠାରୁ ଶୁଣିଥିବା ସବୁତକ କଥା ରାଜାଙ୍କୁ କହିଲା । ଏଥିରେ ରାଜା ପୁରାପୁରି ଭାବରେ ସନ୍ତୁଷ୍ଟ ହୋଇ ତାକୁ ପ୍ରଚୁର ଧନ ସମ୍ପତ୍ତି ଦେଇ ବିଦାକଲେ ।

ଆଇଶାନ ଘରକୁ ଫେରିବା ବାଟରେ ପୁନର୍ବାର ଚଢ଼େଇକୁ ଧନ ଦେବା କଥା ମନେ ପକାଇ ଦୁଃଖ କଲେ । ପୁଣି ସେ ଭାବିଲା ଯେ, ଯଦି ସେ ଏଥର ଚଢ଼େଇକୁ ଧନ ନ ଦିଏ ତାହାହେଲେ ହୁଏତ ସେ

ସିଧା ଯାଇ ରାଜାଙ୍କୁ ଆଇଭାନ ବିରୁଦ୍ଧରେ ଅଭିଯୋଗ କରିପାରେ । ଏହା ଭାବି ରାସ୍ତାରୁ ଆଇଭାନ୍ ଏକ ବଡ଼ ପଥର ଖଣ୍ଡ ଉଠାଇ ଧରିଲା ଏବଂ ପୁଣି ଚାଲିବାକୁ ଲାଗିଲା ।

ଯେତେବେଳେ ସେ ଚଢ଼େଇଥିବା ଗଛପାଖରେ ପହଞ୍ଚିଲା ସେତେବେଳେ ଆଇଭାନକୁ ଦେଖି ତା ସାଙ୍ଗରେ କଥା ହେବା ଆଶାରେ ଚଢ଼େଇଟି ଟିକେ ତଳ ଡାଳକୁ ଓହ୍ଲାଇ ଆସିଲା । କିନ୍ତୁ କଥା ହେବା ପରିବର୍ତ୍ତେ ଆଇଭାନ୍ ହଠାତ୍ ହାତରେ ଧରିଥିବା ପଥରଟିକୁ ଲକ୍ଷ୍ୟ କରି ଚଢ଼େଇ ଉପରକୁ ମାରିଲା ତାକୁ ମାରିଦେବା ପାଇଁ । କିନ୍ତୁ ଚଢ଼େଇଟି ତାହା ଦେଖି ଉଡ଼ି ପଳେଇଲା । ତଥାପି ତାର ଡେଣାରେ ସାମାନ୍ୟ ଆଘାତ ଲାଗିଲା ।

ଆଇଭାନ୍ ଚଢ଼େଇଟିକୁ ନ ମାରିପାରିବାରୁ ଆହୁରି ଅଧିକ ଦୁଃଖିତ ହେଲା । କିନ୍ତୁ କିଛିଦିନ ପରେ ସେ ସବୁ ଭୁଲିଗଲା ।

କିଛି ବର୍ଷ ପରେ ପୁଣି ଥରେ ରାଜାଙ୍କ ଦୂତ ଆସି ହଠାତ୍ ଆଇଭାନ ପାଖରେ ପହଞ୍ଚିଲା ଏବଂ ରାଜା ଦେଖିଥିବା ଏକ ସ୍ୱପ୍ନ ବିଷୟରେ କହିଲା । ଏଥର ରାଜା ସ୍ୱପ୍ନ ଦେଖିଥିଲେ ଯେ, 'କେତେଗୁଡ଼ିଏ ସୁନ୍ଦର ଶ୍ୱେତ ଶ୍ୱେତ ଧଳା ମେଣ୍ଢା ରାଜ ଉଆସ ଛାତରେ ଖୁସିରେ ଖେଳୁଛନ୍ତି'' । ଇଭାନ୍‌କୁ ଆଦେଶ ହୋଇଥିଲା ଯେ ସେ ଯଥାସମ୍ଭବ ଶୀଘ୍ର ଯାଇ ରାଜାଙ୍କ ସାଙ୍ଗରେ ଦେଖା କରି ସ୍ୱପ୍ନର ରହସ୍ୟ ବିଷୟରେ ରାଜାଙ୍କୁ କହିବ ।

ଆଇଭାନ ତାହାଶୁଣି କିଛି ଚିନ୍ତା ମଧ୍ୟ କରିପାରିଲା ନାହିଁ । ତେଣୁ ସେ କହିଦେଲା ଯେ ତାର ରାଜ ଉଆସକୁ ଯିବାପାଇଁ ଇଚ୍ଛା ନାହିଁ । ତେଣୁ ସେ ଯିବ ନାହିଁ । ତାହା ଶୁଣି ରାଜାଙ୍କ ଦୂତ ଚାଲିଗଲା । କିନ୍ତୁ ତାର ଠିକ୍ କିଛି ଘଣ୍ଟା ପରେ ରାଜାଙ୍କର ସେନାପତି ଆସି ପହଞ୍ଚିଲେ ଏବଂ ଆଇଭାନକୁ କହିଲେ ଯେ ଯଦି ସିଏ ରାଜାଙ୍କର ଆଦେଶ ନ ମାନିବ ତାହାହେଲେ ତାକୁ ଫାଶି ଦଣ୍ଡ ଦିଆହେବ । ତାହା ଶୁଣି ଆଇଭାନ୍ ଡରିରେ ଥରିବାକୁ ଲାଗିଲା ଏବଂ ସେନାପତିଙ୍କୁ କହିଲା ସେ ବହୁତ ଶୀଘ୍ର ଯାଇ ରାଜାଙ୍କର ସାଙ୍ଗରେ ଦେଖା କରିବ ।

ସେନାପତି ଯିବାପରେ ଆଇଭାନ ବହୁତ କାନ୍ଦିଲା ଏବଂ ନିଜକୁ ନିଜେ ଦୋଷ ଦେଇ କହିବାକୁ ଲାଗିଲା ଯେ, କାହିଁକି ଚଢ଼େଇକୁ ତାର ଭାଗ ନ ଦେଇ ମାରିଥିଲି ? ବର୍ତ୍ତମାନ ପୁଣିଥରେ କେଉଁ ମୁହଁରେ ମୁଁ ଚଢ଼େଇ ପାଖକୁ ଯିବି । ଏହିପରି କିଛି ସମୟ ବିତିଗଲା । ତାପରେ ସେ ବାଧ୍ୟ ହୋଇ ଅନ୍ୟ କୌଣସି ଉପାୟ ନ ପାଇ ପୁଣି ଥରେ ଯାଇ ସେହି ଚଢ଼େଇ ରହୁଥିବା ଗଛ ତଳେ ଠିଆ ହେଲା । କିଛି ସମୟ ପରେ ଗଛ ଉପରୁ ସେହି ଚଢ଼େଇର କୋମଳ ସ୍ୱର ଭାସି ଆସିଲା :— କଣ ପୁଣି ଥରେ ରାଜା ତୁମକୁ ତାଙ୍କର କିଛି ନୂଆ ସ୍ୱପ୍ନର ରହସ୍ୟ ପଚାରିଛନ୍ତି ? ତାହା କଣ ? ତାହା ଶୁଣି ଆଇଭାନ ଖୁସି ହୋଇ ସ୍ୱପ୍ନ ବିଷୟରେ ଚଢ଼େଇକୁ ସବୁ କହିଲା । ଚଢ଼େଇ ସବୁ ଶୁଣି ପୁଣି କହିଲା, "ଯଦି ମୁଁ ତୁମକୁ ଏହି ସ୍ୱପ୍ନର ରହସ୍ୟ କହିଦେବି ତାହାହେଲେ କଣ ତୁମେ ମୋତେ ତୁମ ପାଇବା ପୁରସ୍କାରର ଅଧା ଦେବ ?" ଆଇଭାନ କହିଉଠିଲା "ହେ ଦୟାଳୁ ପକ୍ଷୀ, ମୋତେ ବିଶ୍ୱାସ କର । ଏଥର ମୁଁ ପୁରସ୍କାରରେ ଯାହା ପାଇବି ସବୁ ତୁମକୁ ଦେଇଦେବି ।" ତାହା ଶୁଣି ଚଢ଼େଇ କହିଲା ଶୁଣ, ସ୍ୱପ୍ନର ମୂଳ ଅର୍ଥ ହେଉଛି ବର୍ତ୍ତମାନ ରାଜ୍ୟର ଚାରିଆଡ଼େ ସୁଖ ଶାନ୍ତି ରହିଛି । ବର୍ତ୍ତମାନ ଆଉ ରାଜାଙ୍କର ଡରିବାର କିଛି ନାହିଁ । ବର୍ତ୍ତମାନ ତେଣୁ ରାଜା କୌଣସି ବିପଦକଥା ଚିନ୍ତା ନକରି ବରଂ ରାଜ୍ୟର ଉନ୍ନତିରେ ଧ୍ୟାନ ଦେବା ଉଚିତ୍ ।

ତାହାଶୁଣି ଆଇଭାନ ଚଢ଼େଇକୁ ଧନ୍ୟବାଦ ଦେଲା ଏବଂ ରାଜାଙ୍କ ସହିତ ଦେଖା କରିବାକୁ ଆଗେଇ ଚାଲିଲା । ଏହିପରି ଚାଲିବାରେ ଯାଇ ସନ୍ଧ୍ୟା ସମୟରେ ସେ ରାଜାଙ୍କ ପାଖରେ ପହଞ୍ଚିଲା । ଏବଂ ରାଜାଙ୍କୁ ଚଢ଼େଇଠାରୁ ଶୁଣିଥିବା ସବୁ କଥା କହିଦେଲା । ତାହାଶୁଣି ରାଜା ବହୁତ ଖୁସି ହେଲେ ଏବଂ ପୂର୍ବାପେକ୍ଷା ଦୁଇଗୁଣ ଧନ ଦେଇ ଆଇଭାନକୁ ବିଦାକଲେ ।

ଆଇଭାନ ସେହି ଧନ ନେଇ ଯେତେଶୀଘ୍ର ସମ୍ଭବ ଯାଇ ସେହି ଚଢ଼େଇ ପାଖରେ ପହଞ୍ଚିଲା । ଆଇଭାନକୁ ଦେଖି ଚଢ଼େଇଟି ତଳ ଡାଳକୁ ଓହ୍ଲାଇ ଆସିଲା । ଆଇଭାନ ସଙ୍ଗେ ସଙ୍ଗେ କହି ଉଠିଲା "ହେ ଦୟାଳୁ ପକ୍ଷୀ



( ଆଇଭାନ୍ ରାଜାଙ୍କୁ ସ୍ୱପ୍ନର ଅର୍ଥ ବୁଝାଉଛି )

ମୁଁ ମୋର ପୂର୍ବର ବ୍ୟବହାର ପାଇଁ ବହୁତ ଦୁଃଖିତ । ମୁଁ ମୋର କୃତକାର୍ଯ୍ୟ ପାଇଁ ବହୁତ ପଶ୍ଚାତାପ କରିସାରିଲିଣି । ବର୍ତ୍ତମାନ ମୁଁ ପାଇଥିବା ସମସ୍ତ ଧନ ତୁମର ଏବଂ ବର୍ତ୍ତମାନ ମୁଁ ଘରକୁ ଯାଇ ପୂର୍ବର ତୁମର ଆଗ ଧନ ଗୁଡ଼ିକ ମଧ୍ୟ ନେଇ ଆସୁଛି ।"

ସବୁ ଶୁଣି ଚଢ଼େଇଟି ହସି ଉଠିଲା ଏବଂ ତାର କୋମଳ ସ୍ୱରରେ କହିଉଠିଲା, ମୁଁ ତୁମକୁ ତୁମର ପୂର୍ବ ବ୍ୟବହାର ପାଇଁ ଦୋଷୀ କରୁନାହିଁ । ପ୍ରଥମ ଥର ତୁମେ ମୋତେ ଧୋକା ଦେଲ । କାରଣ ସେତେବେଳେ ଚାରିଆଡ଼େ କପଟତା ବିରାଜମାନ କରୁଥିଲା । ଦ୍ୱିତୀୟ ଥର ତୁମେ ମୋତେ ମାରିବା ପାଇଁ ଚେଷ୍ଟା କଲ କାରଣ ସେତେବେଳେ ରାଜ୍ୟରେ ଚାରିଆଡ଼େ ହିଂସାର ବାତାବରଣ ଥିଲା । କିନ୍ତୁ, ବର୍ତ୍ତମାନ ତୁମେ ବିଶ୍ୱାସର ସହିତ କାମ କରୁଛ, କାରଣ ବର୍ତ୍ତମାନ ସବୁଆଡ଼େ ଶାନ୍ତି ବିରାଜମାନ କରୁଛି । ତେଣୁ ତୁମେ ମଧ୍ୟ ଅନ୍ୟଲୋକଙ୍କ ପରି ପ୍ରକୃତି ଦ୍ୱାରା ନିୟନ୍ତ୍ରିତ ହେଉଛ । ପୃଥିବୀରେ ବହୁତ କମଲୋକ ଏପରି ଅଛନ୍ତି ଯେଉଁମାନେ କି ପ୍ରକୃତିକୁ ଅପେକ୍ଷା ନ କରି ନିଜର ସଂଯମ ଏବଂ ବୁଦ୍ଧି ଦ୍ୱାରା ପରିଚାଳିତ ହୁଅନ୍ତି । କିନ୍ତୁ ତୁମେ ସେମାନଙ୍କ ମଧ୍ୟରୁ

ଜଣେ ହୋଇ ପାରିଲ ନାହିଁ କିମ୍ବା ମୁଁ ମଧ୍ୟ ତୁମକୁ ସେହିଭଳି ଆଶା କରୁ ନ ଥିଲି ।"

ଏତିକି କହି ପକ୍ଷୀଟି ଉଡ଼ିବାକୁ ଚେଷ୍ଟା କଲାମାତ୍ରେ ଇଭାନ କହି ଉଠିଲା, "ହେ ଦୟାଳୁ ପକ୍ଷୀ ! ତୁମେ ଦୟାକରି ଏହି ଧନ ତକ ନେଇଯାଅ ।" "ପକ୍ଷୀଟି ତାହା ଶୁଣି କହିଲା, 'ମୁଁ କଣ କରିବି ଏହି ଧନ ନେଇକି ? ମୁଁ ଫଳ ଖାଇ ବଞ୍ଚେ ଏବଂ ବସାରେ ରୁହେ । ଯଦି ମୋର ଧନ ଦରକାର ଥାଆନ୍ତା, ତାହାହେଲେ ମୁଁ ନିଜେ ରାଜାଙ୍କ, ପାଖକୁ ଯାଇ ତାଙ୍କୁ ତାଙ୍କ ସ୍ୱପ୍ନ ବିଷୟରେ କହିପାରିଥାଆନ୍ତି । ତେଣୁ ମୁଁ ଆଶା କରୁଛି ତୁମେ ଏହି ଧନଗୁଡ଼ିକର ସଦୁପଯୋଗ କରି ଖୁସିରେ ରହିବ । ବିଦାୟ !"



# ପରିଶ୍ରମର ଅର୍ଥ

ବୁଦ୍ଧଙ୍କ ବିଷୟରେ କିଏ ଅବା ନ ଜାଣେ । ତାଙ୍କ ପ୍ରବର୍ତ୍ତିତ ବୌଦ୍ଧ ଧର୍ମ ଆଜି ସାରା ପୃଥିବୀରେ ବ୍ୟାପି ଗଲାଣି । ବର୍ତ୍ତମାନ ପୃଥିବୀର ସବୁଆଡ଼େ ବୌଦ୍ଧମାନେ ରହିଛନ୍ତି । ବୌଦ୍ଧବିହାରମାନ ରହିଛି । କିନ୍ତୁ ଏ ଗପଟି ହେଉଛି ଯେତେବେଳେ ବୌଦ୍ଧ ଧର୍ମର ପ୍ରଚଳନ ହୋଇନଥିଲା ।



( ନିରଞ୍ଜନ ନଦୀ କୂଳରେ ତପସ୍ୟାରତ ସିଦ୍ଧାର୍ଥ )

କପିଳବସ୍ତୁର ରାଜକୁମାର ଭାବରେ ଜନ୍ମ ହୋଇଥିଲେ ସିଦ୍ଧାର୍ଥ । ଯେତେବେଳେ ସେ ବୁଝିପାରିଲେ ଯେ ତାଙ୍କ ନିକଟରେ ସାଧାରଣଙ୍କୁ

ନେବା ପାଇଁ କଷ୍ଟ ସନ୍ଦେଶ ଦେଉଛନ୍ତି । ସେ ରାଜପଦ ତ୍ୟାଗ କରି ଜଙ୍ଗଲକୁ ଗଲେ ଓ ନିରଞ୍ଜନା ନଦୀକୂଳରେ ଗୋଟିଏ ଓଷ୍ଟ ଗଛତଳେ ବସି ରହିଲେ ତପସ୍ୟା କରିବାକୁ ଲାଗିଲେ । ତାଙ୍କ ସହ ତାଙ୍କର ପାଞ୍ଚ ଜଣ ଅନୁଗାମୀ ଥିଲେ । କିନ୍ତୁ ସେମାନେ ତାଙ୍କର ଏ ଆଚରଣ ବିଧି ପସନ୍ଦ କରିପାରିଲେ ନାହିଁ । ତାଙ୍କୁ ଛାଡ଼ି ଚାଲିଗଲେ ।

କିନ୍ତୁ ସିଦ୍ଧାର୍ଥ ତାଙ୍କର ଅନ୍ୱେଷଣ ଜାରି ରଖିଲେ । କିଛି ବର୍ଷ ପରେ ସେ ନିର୍ବାଣ ପ୍ରାପ୍ତି ହେଲେ । ସିଦ୍ଧାର୍ଥରୁ ସେ ହୋଇଗଲେ ବୁଦ୍ଧ ।

ସେଠାରୁ ସେ ଗଲେ ବାରାଣସୀକୁ । ସେଠାରେ ସେ ତାଙ୍କର ପୂର୍ବ ୫ଜଣ ଶିଷ୍ୟଙ୍କୁ ଭେଟିଲେ । ପ୍ରଥମେ ସେମାନେ ତାଙ୍କର ବାଣୀ ଶୁଣିବାକୁ କୁଣ୍ଠିତ ହେଉଥିଲେ । କିନ୍ତୁ ବୁଦ୍ଧଙ୍କ ପ୍ରେମଭରା କରୁଣା ଭରା ନୀଳ ଚକ୍ଷୁ ଓ ତେଜୋଦୀପ୍ତ ମୁଖମଣ୍ଡଳ ତାଙ୍କର ସବୁ ସନ୍ଦେହର ସମାଧାନ କରିଦେଲା ।

ବୁଦ୍ଧ ତାଙ୍କର କିଛି ଶିଷ୍ୟଙ୍କ ସହ ବିଭିନ୍ନ ସ୍ଥାନକୁ ବୁଲି ବୁଲି ପ୍ରଚାର କରିବାକୁ ଲାଗିଲେ । ଏଥିରେ ତାଙ୍କୁ ନାନା ପ୍ରକାର ବାଧାବିଘ୍ନ ସମ୍ମୁଖୀନ ହେବାକୁ ପଡ଼ିଲା । ଗୋଟିଏ ନୂଆ ଧର୍ମକୁ ବୁଝିବାକୁ ସମସ୍ତେ ସକ୍ଷମ ହେଉନଥିଲେ । ତଥାପି ବୁଦ୍ଧ ତାଙ୍କ ପ୍ରଚାର ଜାରି ରଖିଥାନ୍ତି ।

ଥରେ ଗ୍ରୀଷ୍ମର ଏକ ଉଦ୍ଧ ଦିନ ଦ୍ୱିପହରେ ବୁଦ୍ଧ ଯାତ୍ରା କରୁଥିଲେ ଗୋଟିଏ ଗଛମୂଳେ ଆଶ୍ରୟ ନେଇଥାନ୍ତି । ତାଙ୍କ ଦେହରୁ ଗମ ଗମ ହୋଇ ଝାଳ ବୋହି ଯାଉଥାଏ ଏବଂ ସେ କ୍ଳାନ୍ତ ଜଣା ପଡ଼ୁଥାନ୍ତି । ଜଣେ ଶିଷ୍ୟ ତାଙ୍କୁ ଏପରି ଅବସ୍ଥାରେ ଦେଖି ଚିନ୍ତା କଲେ, "ଯଦି ତାଙ୍କ ବାପାଙ୍କ ଅନ୍ତେ ସେ ରାଜ୍ୟ ଶାସନ କରିଥାନ୍ତେ ତେବେ କି ସୁଖରେ ସେ ନ ଥାନ୍ତେ ।" ଏହା ଚିନ୍ତା କରି ସେ କାନ୍ଦ ପକାଇଲେ ।

ବୁଦ୍ଧ ତାଙ୍କୁ ଏହାର କାରଣ ପଚାରିଲେ । ସେ କହିଲା "ଭଗବାନ ! ମୁଁ ଜାଣିଛି ଯେ ଆପଣ ଈଶ୍ୱରଙ୍କ ଅବତାର । କିନ୍ତୁ ଆପଣ ବରପ୍ରଦାନ କରି ପୃଥିବୀର ସବୁ ଲୋକଙ୍କୁ ଧର୍ମଜ୍ଞାନ

ନ ଦେଇ ଏପରି କଷ୍ଟ ସହି ତାଙ୍କ ନିକଟକୁ ଯାଉଛନ୍ତି କାହିଁକି ? କାହିଁକି ପୁଣି ଏତେ କଷ୍ଟ କରୁଛନ୍ତି ତାଙ୍କୁ ବୁଝାଇବା ପାଇଁ ?"



ବୁଦ୍ଧ କେବଳ-ହସିଲେ । ତାଙ୍କର ହସ ଯଥେଷ୍ଟ ଥିଲା ଶିଷ୍ୟର ହୃଦୟ ପୂର୍ଣ୍ଣ କରିଦେବାପାଇଁ ।

କିଛିଦିନପରେ ବୁଦ୍ଧ ଥରେ ଗୋଟିଏ ଗାଁର ବାହାରେ ତାଙ୍କର ଡେରା ପକାଇଥାନ୍ତି । ସେ ପୂର୍ବର ସେହି ଶିଷ୍ୟଙ୍କୁ ଡାକି କହିଲେ "ହେ ପ୍ରିୟ ଶିଷ୍ୟ, ତମେ ଗାଁ ମଧ୍ୟକୁ ଯିବ । ସେଠାରେ ସବୁ ଲୋକଙ୍କୁ ଭେଟି ପଚାରିବ, ଆନନ୍ଦ ଓ ପରିପୂର୍ଣ୍ଣ ଜୀବନ ବିତାଇବା ପାଇଁ ସେମାନଙ୍କର କଣ ଦରକାର ।"

ଶିଷ୍ୟଟି ଗାଁ ମଧ୍ୟକୁ ଗଲା । ସେଠାରୁ ସେ ଫେରିଲା ବେଳକୁ ସନ୍ଧ୍ୟା । ବୁଦ୍ଧ ପଚାରିଲେ "ତମେ କେତେ ଜଣଙ୍କୁ ପଚାରିଲ ଏବଂ ସେମାନେ କଣ ଉତ୍ତର ଦେଲେ ତମ ପ୍ରଶ୍ନର ?"

ଶିଷ୍ୟଟି କହିଲା "ଭଗବାନ, ମୁଁ ଶହେ ଜଣ ଲୋକଙ୍କୁ ଭେଟିଲି । ସେଥିରୁ ୫୦ ଜଣ କହିଲେ ସେମାନେ ଖୁସି ହେବେ ଓ ସନ୍ତୁଷ୍ଟ ରହିବେ ଯଦି ତାଙ୍କର ଆୟ ବଢ଼ିଯାଏ । ୧୦ ଜଣ କହିଲେ ସେମାନେ ନିଜ ନିଜ

ପୁଅ ଝିଅ ପାଇଁ ଭଲ କନ୍ୟା କମ୍ବା ବର ପାଇଲେ ସନ୍ତୁଷ୍ଟ ହେବେ । ୨୦ ଜଣ କହିଲେ ସେମାନେ ଭଲ ଘରଟିଏ ପାଇଲେ ଖୁସୀ ହେବେ । ୧୦ ଜଣ ଯେଉଁମାନେ କ ମାଲମକଦ୍ଦମାରେ ଲିପ୍ତ ରହିଛନ୍ତି କହିଲେ ବିଚାରପତିଙ୍କ ନ୍ୟାୟ ଯଦି ସେମାନଙ୍କ ସପକ୍ଷରେ ଯାଏ, ତେବେ ସେମାନେ ଖୁସି ହେବେ ।

"ତେବେ କେତେ ଜଣ ଗୁହିଁଲେ ଭଗବାନଙ୍କୁ ପାଇଲେ ବା ଧର୍ମ ରାସ୍ତାରେ ଗଲେ ଖୁସି ହେବେ ?



'କେହି ନୁହଁ" ଶିଷ୍ୟଟି ଉତ୍ତର ଦେଲା । "ତେବେ ବତ୍ସ ! ଗୋଟିଏ ଲୋକ ଯାହା ଗୁହୁଁ ନାହିଁ, ତାକୁ ସେ ବର ମୁଁ କପରି ଦେବି ।" ବୁଦ୍ଧ କହିଲେ ।

ଶିଷ୍ୟଟି ଚୁପ୍ ରହିଲା । ସେ ବୁଝିପାରିଲା ଭଗବାନ କାହିଁକି ପରିଭ୍ରମ କରୁଛନ୍ତି ମନୁଷ୍ୟଙ୍କ ମଧ୍ୟରେ ।

# ନାକଫୁଲ ଓ ନାକ

ତୁଳସୀ ଦାସ ଭାରତ ବର୍ଷର ଜଣେ ପ୍ରଖ୍ୟାତ ଜ୍ଞାନୀ ଏବଂ କବି ଥିଲେ । ସେ ୧୬୪୬ ମସିହାରେ ଜନ୍ମ ଗ୍ରହଣ କରିଥିଲେ ଏବଂ ୧୭୩୭ରେ ମୃତ୍ୟୁ ବରଣ କରିଥିଲେ । ସେ ତାଙ୍କ ଜୀବନ କାଳରେ ରାମାୟଣର ରୂପ ରେଖ, ଶ୍ରୀରାମ ଚରିତ ମାନସ ଲେଖି ଭାରତ ବର୍ଷରେ ପ୍ରତିଷ୍ଠା ଅର୍ଜନ କରିଥିଲେ ।

ତୁଳସୀ ଦାସ ତାଙ୍କ ଯୁବକ ଅବସ୍ଥାରେ ହିଁ ସନ୍ୟାସ ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ଏବଂ ସେତେବେଳେଠାରୁ ସେ ତାଙ୍କ ଜୀବନର ବେଶି ସମୟ ବନାରସ ଏବଂ ଅଯୋଧ୍ୟାରେ ହିଁ କଟାଇ ଥିଲେ । କିନ୍ତୁ ମଝିରେ ମଝିରେ ସେ ଅନ୍ୟାନ୍ୟ ସ୍ଥାନମାନଙ୍କୁ ବୁଲିବା ପାଇଁ ଯାଉଥାନ୍ତି । ସେ ଯେଉଁଠିକୁ ଯାଉଥିଲେ ତାଙ୍କର ମଧୁରସ୍ୱରରୁ ପ୍ରବଚନ ଶୁଣିବା ପାଇଁ ଲୋକମାନେ ପାଗଳ ପରି ତାଙ୍କ ପଛରେ ଗୋଡ଼ାଉ ଥିଲେ ।

ରାମଙ୍କର ଏହି ପରମ ଭକ୍ତ ଜଣଙ୍କ ମଝିରେ ମଝିରେ ବହୁତ ଗୁଡ଼ାଏ ଅବିଶ୍ୱାସନୀୟ ଘଟଣା ଘଟାଉଥିଲେ । ଲୋକଙ୍କ କହିବା ଅନୁଯାଇ ଥରେ ସେ ଏକ ମାରାତ୍ମକ ଷଣ୍ଢକୁ ଏପରି ବଶ କରିଦେଲେ ଯେ । ସେହି ଷଣ୍ଢ ତାଙ୍କ ପାଖରେ ପୋଷା ମାନି ଘାସ ଖାଇ ବଞ୍ଚିଲା । ସେହିପରି ଆଉ ଥରେ ତାଙ୍କର ଜଣେ ଗରିବ ଶିଷ୍ୟର ଉନ୍ନତି ପାଇଁ ଗଙ୍ଗା ନଦୀର ଦିଗ ପରିବର୍ତ୍ତନ କରିଦେଇଥିଲେ ଯାହା ଦ୍ୱାରା କି ସେ ଶିଷ୍ୟର ଜମି ଉର୍ବର ହୋଇଥିଲା ।

କିନ୍ତୁ ଏପରି ଆଶ୍ଚର୍ଯ୍ୟ ଘଟଣା ଘଟାଇବା ତାଙ୍କର ଅଭ୍ୟାସ ନଥିଲା । କେବେ ହେଲେ କାହା ମନୋରଞ୍ଜନ ପାଇଁ ଆଶ୍ଚର୍ଯ୍ୟ କାର୍ଯ୍ୟ କରୁନଥିଲେ । ବରଂ ଦରକାର ପଡ଼ିଲେ ପରର ମଙ୍ଗଳ ପାଇଁ ଅନେକ ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରି ଦେଉଥିଲେ । କିମ୍ବଦନ୍ତୀ କୁହେ ଯେ ଥରେ ମୋଗଲ ସମ୍ରାଟ ଆକବର ସନ୍ଥ ତୁଳସୀ ଦାସଙ୍କୁ ଦିଲ୍ଲୀକୁ ନିମନ୍ତ୍ରଣ କରିଥିଲେ ଏବଂ ଯେତେବେଳେ ସେ ଦିଲ୍ଲୀରେ ପହଞ୍ଚିଲେ ତାଙ୍କୁ ଅନୁରୋଧ କରାଗଲା ସମ୍ରାଟଙ୍କ ଆଗରେ କିଛି ଆଶ୍ଚର୍ଯ୍ୟ କାର୍ଯ୍ୟ କରିବା ପାଇଁ । କିନ୍ତୁ

ସେ ମନାକରି ଦେଇଥିଲେ ସମ୍ରାଟଙ୍କ କଥା ମାନିବା ପାଇଁ । ତେଣୁ ତାଙ୍କୁ ବନ୍ଦୀ କରାଯାଇଥିଲା । ସେ ବନ୍ଦୀ ଗୃହରେ ରହିବାର ଅଳ୍ପ ସମୟ ମଧ୍ୟରେ ତାଙ୍କର ହଜାର ହଜାର ଭକ୍ତ ସାରାରେ ସମ୍ରାଟଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଦେଇଥିଲେ । ସେମାନେ ସାରା ରାଜ୍ୟରେ ଗଣ୍ଡଗୋଳ ଆରମ୍ଭ କରିଦେଇ ଥିଲେ । ତେଣୁ ଆକବର ବାଧ୍ୟହୋଇ ସନ୍ଥ ତୁଳସୀ ଦାସଙ୍କୁ ବନ୍ଦୀ ଗୃହରୁ ମୁକ୍ତ ଦେଇଥିଲେ । ଏବଂ ମୁକ୍ତ ହେବା ସଙ୍ଗେ ସଙ୍ଗେ ସାରାରାଜ୍ୟରେ ଶାନ୍ତି ଫେରି ଆସିଥିଲା ।

ସନ୍ଥ ତୁଳସୀ ଦାସ କେବେ ହେଲେ ଆଶ୍ଚର୍ଯ୍ୟ ଜନକ କାର୍ଯ୍ୟ କରି କାହାକୁ ଖୁସି କରିବାକୁ ଚାହୁଁ ନଥିଲେ କିମ୍ବା କେବେ ହେଲେ ସେ ପର କାର୍ଯ୍ୟ କରି ସମ୍ମାନ ପାଇବାକୁ ଚାହୁଁ ନଥିଲେ । ସେ ଯେ କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରୁଥିଲେ, ସେହି ସମୟରେ ସେହି କାର୍ଯ୍ୟଟିକୁ ଯେମିତି ହେଲେ ସମାଧାନ କରୁଥିଲେ, ପ୍ରାକୃତିକ ଭାବରେ ହେଉ କିମ୍ବା ଅପ୍ରାକୃତିକ ଭାବରେ ହେଉ । ପ୍ରକୃତରେ ଦେଖିବାକୁ ଗଲେ ସେ ଏକ ଭଗବାନଙ୍କ ରୂପରେ ଅବତାରଣ କରିଥିଲେ ।

ସବୁ ବେଳେ ସନ୍ଥ ତୁଳସୀ ଦାସ ଚାହୁଁଥିଲେ ଯେ ସବୁ ଲୋକ—ମାନଙ୍କ ଅନ୍ତରରେ ଭଗବାନଙ୍କ ପ୍ରତି ଭକ୍ତିଭାବ ଜନ୍ମ ନେଉ । ତେଣୁ ସବୁ ବେଳେ ସେ ଭଗବାନଙ୍କ ନାମ ଗୁଣୁଗୁଣୁ ହେଉଥିଲେ । ଗାଉଥିଲେ ଏବଂ ସମସ୍ତଙ୍କୁ କହୁଥିଲେ ।

ଏହିପରି ଭାବରେ ସନ୍ଥ ତୁଳସୀ ଦାସଙ୍କ ଜୀବନ ଅତିବାହିତ ହେଉଥିଲା । ଥରେ ତୁଳସୀ ଦାସ ବୁଲୁବୁଲୁ ହଠାତ୍ ଏକ ଗ୍ରାମରେ ପହଞ୍ଚିଲେ । ସେହି ଗ୍ରାମର ଗ୍ରାମବାସୀମାନେ ବହୁଦିନ ପୂର୍ବରୁ ତାଙ୍କୁ ଅନୁରୋଧ କରିଥିଲେ ଥରେ ମାତ୍ର ତାଙ୍କ ଗ୍ରାମକୁ ଆସି ଭଗବାନଙ୍କର କାହାଣୀ ପ୍ରବଚନ ଶୁଣାଇବା ପାଇଁ ।

ସେହି ଗ୍ରାମରେ ଲତିକା ନାମରେ ଯୁବତୀ ସ୍ତ୍ରୀ ଲୋକଟିଏ ବାସ କରୁଥିଲା । ସେ ଦିନଟି ତା ପାଇଁ ବହୁତ ଖୁସିର ଦିନ ଥିଲା । କାରଣ ତାର ସ୍ୱାମୀ ତା ପାଇଁ ସେ ଦିନ ଏକ ସୁନ୍ଦର ସୁନାର ନାକଫୁଲ ଆଣି ଦେଇଥିଲେ । ସେଥିପାଇଁ ଲତିକା ସେହିଦିନ ସକାଳୁ ଉଠି ପ୍ରଥମେ ତାର

ସମସ୍ତ ତାହା ପରେ ଲୋକଙ୍କ ପାଖକୁ ଯିବାକୁ ଲାଗିଲା ଏବଂ କହିବାକୁ ଲାଗିଲା, "ଆପଣମାନେ ମୋର ନାକରେ ଲାଗିଥିବା ସୁନା ଫୁଲଟିକୁ ଦେଖିଛନ୍ତି ? ଏଇଟା ମୋ ପାଇଁ ମୋ ସ୍ୱାମୀ ଆଣିଛନ୍ତି । ଆଜ ସକାଳେ । ସେ ବଡ଼ ଖର୍ଚ୍ଚି ଲୋକ । ସବୁବେଳେ ସେ ଏପରି ଖର୍ଚ୍ଚ କରୁଛନ୍ତି । ତଥାପି, ଏହା ଫଳରେ ମୋ ନାକଟା ସୁନ୍ଦର ଦେଖା ଯାଉଛି, ତଥାପି... ଆଚ୍ଛା ଆପଣ କଣ ଭାବୁଛନ୍ତି । ଏହା ସୁନ୍ଦର ଲାଗୁନାହିଁ କି ?" ଏହା ଦ୍ୱାରା ଲୋକଙ୍କର ଇଚ୍ଛାଥିଲେ ନଥିଲେ ମଧ୍ୟ ସେମାନେ ଟିକିଏ ହସି ଦିଅନ୍ତି ଏବଂ କୁହନ୍ତି ତୁମେ ଯାହା କହୁଛ ଠିକ୍ କହୁଛ ।

ସେଦିନ ଦିନ ସନ୍ଧ୍ୟା ବେଳେ ସମସ୍ତେ ଗଲେ ସନ୍ଥ ତୁଳସୀ ଦାସଙ୍କ କଣ୍ଠରୁ ରାମାୟଣ ପ୍ରବଚନ ଶୁଣିବା ପାଇଁ । ଲତିକା ମଧ୍ୟ ସେମାନଙ୍କ ସହିତ ଯାଇଥିଲା । ଏବଂ ଅନ୍ୟ ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ବସିଥିଲା । ଏହିପରି କିଛି ସମୟ ପରେ ଯେତେବେଳେ ପ୍ରବଚନ ସରିଗଲା ଗ୍ରାମବାସୀମାନେ ଜଣଙ୍କ ପରେ ଜଣେ ଉଠି ସନ୍ଥ ତୁଳସୀ ଦାସଙ୍କ ପାଦ ତଳେ ମୁଣ୍ଡିଆ ମାରି ଘରକୁ ଚାଲି ଯାଉଥାନ୍ତି ।

ଲତିକା କିନ୍ତୁ ସମସ୍ତଙ୍କ ପଛରେ ରହିଥାଏ ।

ସମସ୍ତେ ଯିବା ପରେ ସେ ଧିରେ ଧିରେ ଉଠିଲା ଏବଂ ଯାଇ ସନ୍ଥ ତୁଳସୀ ଦାସଙ୍କ ପାଦ ଛୁଇଁ ତାଙ୍କ ମୁହଁକୁ ଚାହିଁ ରହିଲା । ଏହା ଦେଖି ସନ୍ଥ ସ୍ନେହଁରେ ତାକୁ ପଚାରିଲେ, "ହେ କନ୍ୟା, ତୁମେ କଣ ମତେ କିଛି କହିବାକୁ ଚାହୁଁଚ ?" ତାହା ଶୁଣି ଲତିକା ସଙ୍ଗେ ସଙ୍ଗେ ଖୁସିରେ କହି ଉଠିଲା "ଅବଶ୍ୟ ମୋର ଆପଣଙ୍କୁ ବେଶୀ କିଛି କହିବାର ନାହିଁ । ମୁଁ କେବଳ କହିବାକୁ ଚାହୁଁଛି ମୋର ଏହି ନାକ ଫୁଲ ବିଷୟରେ ।" ଏହା ଶୁଣି ସନ୍ଥ ପଚାରିଲେ "ଏଇଟା କଣ ?" ଲତିକା ସଙ୍ଗେ ସଙ୍ଗେ କହିଲା ଏଇଟା ଦେଖନ୍ତୁ, ଏହା ଏକ ସୁନା ନାକଫୁଲ ଏବଂ ଆଜ ସକାଳେ ଏଇଟା ମୋ ପାଇଁ ମୋ ସ୍ୱାମୀ ଆଣି ଦେଇଛନ୍ତି, ପର ଓ ଏଇଟା ମୋ ନାକକୁ ସୁନ୍ଦର ଦେଖାଯାଉଛି, ତଥାପି......ଆଚ୍ଛା ଆପଣ କଣ ଭାବୁଛନ୍ତି ଯେ ଏହା ସୁନ୍ଦର ଦିଶୁନି ?



ସବୁ ଶୁଣି ସନ୍ଥ ତୁଳସୀ ଦାସ ଅଳ୍ପ ହସି ଦେଲେ ଏବଂ କହିଲେ "ହେ କନ୍ୟା ! ଅବଶ୍ୟ ଏହା ତୁମ ନାକକୁ ଅତି ସୁନ୍ଦର ଦେଖା ଯାଉଛି ଏବଂ ମୁଁ ମଧ୍ୟ ବହୁତ ଖୁସି ଯେ ତୁମେ ତୁମର ସ୍ୱାମୀ ପ୍ରତି କୃତଜ୍ଞତା ଜ୍ଞାପନ କରୁଛ । କାରଣ, ସେ ତୁମ ପାଇଁ ଆଣି ଦେଇଛନ୍ତି । କିନ୍ତୁ ହେ ମୋର ପ୍ରିୟ କନ୍ୟା, କେବେ ହେଲେ ତୁମେ କୃତଜ୍ଞତା ଜ୍ଞାପନ କରିଛକି ସେହି ଲୋକଟି ପ୍ରତି (ଭଗବାନ) ଯେ କି ତୁମ ପାଇଁ ଏହି ନାକଟି ହିଁ ଗଢ଼ି ଦେଇଛନ୍ତି ।"



ଏହି ଛୋଟିଆ ସହଜ ବାକ୍ୟଟି ଦ୍ୱାରା କେବଳ ଲତିକା ନୁହେଁ ବରଂ ସେଠାରେ ଥିବା ସମସ୍ତ ବ୍ୟକ୍ତିଙ୍କର ଚକ୍ଷୁ ଖୋଲି ଯାଇଥିଲା ଏବଂ ସମସ୍ତେ ଭଗବାନଙ୍କ ପ୍ରତି ଉଦ୍‌ବୁଦ୍ଧ ହୋଇଯାଇଥିଲେ ।

